ଖାଲେ ଦୁଃଖିମା ହୋଇବ ॥ ବଲ୍ଲବନେ ଅନ୍ନ ଖାଇଲ ଶାରଦା ସୁନ୍ଦରୀ । ପତା ନା ପାଇଲ ଅନ୍ନ ବସ୍ତ୍ରେକ ହେତୁ ॥ କୁଥା ଫେଲାଇବେ ପାତା ଅଛେ ଅବଶେଷ । ଘେରର ହେଲ ଦେଖି ଲୋକେ କରିବେକ ହାସ୍ୟ ॥ କଜଲ ପାତାଏ ତାଏ ଖନ୍ଦକ ଖୋଲିଲ । ଈଶାନତେ ବସି ପାତା ପୁତିୟାଁ ରଖିଲ ॥ ତୃତୀୟ ପ୍ରହର ରାତେ ଗୁଜୁରିଆଁ ଗେଲ ନିଦ୍ରାଏ ଆତୁର କନ୍ୟା ଶୟନ କରିଲ ॥ ମଦନସୁନ୍ଦର ଜାଗେ କୁସୁମ ଶଯ୍ୟାଏ । ହେନକାଲେ ଆସମାନେ କହେନ ଖୋଦାଏ ॥ ଶୁନରେ ଖବର ବାବା ମଦନସୁନ୍ଦର । କାହେକୁ ରହେଗା ବେଠା ରାଜାର ନବଂର ॥ ସୁମନ୍ତ କୁମନ୍ତ ଯାଏ ଗଛ ଲୟା ଉଡେରେ । ଝଟାକ୍ ପଇଠ ଗୟାଁ କୋଠର ଭିତରେ ॥ ଅତେକ କହିୟାଁ ଗେଲ ସତ୍ୟନାରାୟନ । ଶୁନି ଚମତ୍କାର ହେଲ ସୁନ୍ଦର ମଦନ ॥ କାଳି ଲୟାଁ ଅଞ୍ଚଲେତେ କରିଲ ଲେଖନ । ତୁମାକେ ଗୁଡ଼ିୟାଁ କନ୍ୟା ଯାଛି ଗୋ ସଦନ ॥ ଶୁନ ଗୋ ସୁନ୍ଦରୀ ପ୍ରିୟେ ପରିଚୟ ବାମା । ସୀତାର ଅଞ୍ଚଲେ ଯେନ ଲେଖେ ରାମନାମ ॥ ଧାନନ୍ଦ ସାନନ୍ଦ ବଲ୍ୟା ଦୁଇ ସୌଦାଗର । ତାହାର କନିଷ୍ଠ ଭାଇ ମଦନ ସୁନ୍ଦର ॥ ସୁମନ୍ତ କୁମନ୍ତ ନାମେ ଦୁଇ ଭାଉଜ ଆଛୁ । ସପ୍ତଗ୍ରାମେ କରେ ଘର ଭାଗୀରଥି କାଛେ ॥ ରାଜ୍ୟେର ଠାକୁର ଆମାର ରାଜା ରତ୍ନାକର । ତୁମାକେ ଗୁଡ଼ିୟା କନ୍ୟା ଯାଇ ନିଜଘର ॥ ପତିବ୍ରତା ହଏ ମୋର ଉଦ୍ଦେଶ୍ୟ କରିବେ । ନାହିଁ ହେଲେ ଭ୍ରଷ୍ଟ ହଇୟା ଡୁବିୟାଁ ମରିବେ ॥ ଅତବୋଲି ଗାଛେ ଉଠି ରହିଲ ମଦନ । ସୁମନ୍ତ କୁମନ୍ତ ଗାଛେ କଲି ଆରୋହନ ॥ ଗାଛ ଚଲାଇୟା ତବେ ଦୁଇଯାଏ ଗେଲ । ମଦନସୁନ୍ଦର ଗାଛେ ଲୁକିୟାଁ ରହିଲ ॥ ବାହାରିଲ ମଦନ ଯେ ତାହାର ପାଛୁତେ । ପ୍ରବେଶିଲ ଘରେ ଗିୟାଁ ଶେଛଲ ଖାଟେତେ ॥ କୁନ୍ତଲ ଜାଗିୟାଁ ଉଠେ ପାଶେ ନାହିଁ ପତି । ମନସ୍ତାପ କରି କନ୍ୟା କାନ୍ଦେ ଦୁଃଖମତି ॥ ଓହେ କାନ୍ତ

କୋଥା ଗେଲେ ଆମାର ଗୁଡ଼ୟାଁ । ତୁମି ତରୁ ଆମି ଲତା ଥାକତେ ଜଡ଼ୟାଁ ॥ ଜାତି କୁଲ ଲଜ ଭୟ ସବ ତେଜ୍ୟା କୈଲ୍ଲ । କନକେର ମାଲ୍‌ଲୟାଁ ତୁମାକେ ଦିଲେ ॥ ସଦାଇ ବାଞ୍ଛିବ ଆମି କରି ଅନୁରାଗ । କି ଦୋଷ ଦେଖ୍ୟାଁ ମୋରେ କୈଲ ପରିତ୍ୟାଗ ॥ ବେନି କର ଶିରେ ମାରି କାନ୍ଦେ ଯେ କୁନ୍ତଲ । ଶ୍ରାବନେର ଧାରା ଯେନ ଲୋଚନ ବହିଲ ॥ ମୁଖେ ମୁଖ ଦିୟାଁ ମୋର ଶୁଏଛିଲ କୋଲେ । ଅଖାନି ଗୁଡ଼ିଲେ ସ୍ୱାମୀ ନିଦ୍ରାର ବିଭୋରେ ॥ ଅଙ୍ଗେର ବସନ ମୁଛେ ନୟନେର ଜଲ । କଙ୍କଣେର ଚିହ୍ନ ଦେଖ୍ୟା ପଡ଼ିଲ ସକଲ ॥ ସରସ ହରଷ ଚିତ୍ତ ରାଜାର ନନ୍ଦନୀ । ବଲେ ନା ପାଇଲ ଆମି ପ୍ରଭୁ ଗୁନମନି ॥ ରଜନୀ ପ୍ରଭାତେ ଲୋକ ଦେଖିଆସେ ଚୋଖେ । ଏକେଲା ବସେଛୁ କନ୍ୟା ବର ନାହିଁ ଦେଖେ ॥ ଶୁନିଆଁ ଧାଇଲ ତବେ ଏକଶତ ବର । ଜବାବର୍ଣ୍ଣ ବରିଲ କାଲୀମ ସୁନ୍ଦର ॥

ଉପଦ୍ରବ କରେ ସର୍ବ ମୁକୁଟ ବାନ୍ଧିୟା । ଏକଶତ ବର ଏଲ ଦ୍ୱନ୍ଦ ଭଆଇୟା ॥ ପଡ଼ାପଡ଼ି ହୁଡ଼ା ହୁଡ଼ି କର୍ୟାଁ କୁମାରେ । ସବେ ବଲେ ଆମି ବିଭା ହଲୁଁ କୁନ୍ତଲରେ । ଅନ୍ୟାୟ କରୟା ସବ ଦ୍ୱନ୍ଦ ଭଆଇଲ । ମରାମରି ଧରାଧରି ଚହିଲ ପଡ଼ିଲ ॥ କେହୁ କାରେ ନାହିଁ ମାନେ ନାହିଁ କରେ ସାକ୍ଷୀ । କୁନ୍ତଲ ନଗରେ ଯାଇଁ ସର୍ବ ବର ଝାଙ୍କି ॥ ସର୍ବେ ବଲେ ଆମାର କାଛେ ଆସ ଗୋ ସୁନ୍ଦରୀ । କେହୁ ବଲେ କାଲୁଁ ଥାଡ଼ି ହାଣ୍ଡି ଯେ ଆମାରି ॥ କନ୍ୟା ବଲେ ବର ସବ କି କର ବିଚାର । ଦ୍ରୌପଦୀ ବରିଲ ଯେନ ପାଞ୍ଚୋଟି ଭ୍ରାତାର ॥ ଇନ୍ଦ୍ରେର ଇନ୍ଦ୍ରାନୀ ଯେନ ଆର ବୃନ୍ଦାବତୀ । ଆପନାର ସ୍ୱାମୀ ଗୁଡ଼ି ଭଜେ ଅନ୍ୟପତି ॥ ତାରା ଆର ମନ୍ଦୋଦରୀ ରାବନେର ଘରେ । ପରେର ହାତରେ ଲୟା ଯେନ ଘର କରେ ॥ ଆମି ପତିବ୍ରତା ଅନ୍ୟ ମୁଖ ନାହିଁ ଗୁହିଁ ।

ବେଶ୍ୟାର ମନ୍ଦିରେ ଯାଅ ଝାଡ଼ କଉଡ଼ି ଲଇ ॥ ତାମ୍ବୁଲ କର୍ପୂର ଖାଇଁ ନଶି ବାଞ୍ଛ ଗିୟାଁ । ଏଖାନେତେ କେନ ଥାକ ଆମାକେ ଛାଡ଼ିୟାଁ । ଏକ ବର ବଲେ କନ୍ୟା ମୋରେ ପାସୋରିଲେ ॥ ରାଜକାଲେ କେନଭବେ ଆମାରେ ବରିଲେ ॥ ବନମାଳା ମୋର ଗଲେ ଦିଲ ବଦ୍ୟମାନ । ପୁଷ୍ପବାସେ ଆମାରେ ଶ୍ରୀଙ୍ଗିଆ ଦିଲେ ପାନ ॥ ହରିଦ୍ରା ବସନ ଆସି ପରିଅଛି ଦେଖ । ବିଭାହଇୟା ଅନ୍ୟ ମତେ କେନ ମୋରେ ଲେଖ ॥ ଆର ଏକବର ବଲେ ଶୁନ ଗୋ ସୁନ୍ଦରୀ । ମୋର ହାତେ ଆଛେ ନିଦର୍ଶନ ଅଙ୍ଗୁରି ॥ କବାଟ ଖୁଲିଆଁ ଦିଅ ବସି ତୁମାର କାଛେ । ମଙ୍ଗଲ ଅକ୍ଷତ ସୂତ୍ର ହାତେ ଆମାର ଆଛେ ତାହାରେ ବନ୍ଦିଆଁ ଆଗୁ କହେ ଏକବର । ଶୁନଗୋ ରାଜକନ୍ୟା ଆମାର ଉତ୍ତର ॥ ସତ୍ୟ କରେଛିଲେ କନ୍ୟା ଖେଲିବାର କାଲେ । ବିଭା ହୟା କେନ ନାହିଁ ମାନ ଏତେବେଲେ ॥ ଦରଜା ଖୋଲିୟାଁ ଦିଅ ତୋମାର ମୁଖ ଦେଖି । ତବେ ଆମାର ପ୍ରାନ ରହେ ଶୁନ ଶଶିମୁଖି ॥ ଏମନ ପ୍ରକାରେ କହେ ଏକଶତ ବର । ଉପହାସ କରି କହେ କୁନ୍ତଲ ଗୋଚର ॥ ରୂପ ଗୁନ ଦେଖି ମୋରେ ହେନ ଅଭିମାନେ । ପାଦ୍ୟ ଅର୍ଘ୍ୟ ଦିଲ ମୋରେ ଲୋଭ କରି ମନେ । ସବଜନ ଗୃହିଁ ଆନେ ଆମାକେ ବରିଲେ । ଇଛା ବନମାଳ ଲୟାଁ ଦିଲ ମୋର ଗଲେ ॥ ଧନ ରତ୍ନ ଗଜ ବାଜୀ ଅନେକ ଯୌତୁକ । ପ୍ରଦାନ କରିଲ ରାଜା ହରଷେ କୌତୁକେ ॥ ପୁଷ୍ପ ବାସେ ପଲଙ୍କେ ବସିୟାଁ ଦୁଇଜନେ । ତାମ୍ବୁଲ କର୍ପୂର ଖାଲି ଆନନ୍ଦିତ ମନେ । ପାଶାଖେଲେ ଦୁଇଜନ ମନ୍ଦିରେ ଶୋଇଲୁଁ । ବୁକେ ବୁକେ ମୁଖ ସୁଖେ ଚୁମ୍ବନ ଯେ ଦେଲୁଁ ॥ ତୁମି ମୋରେ କଷ୍ଟତରେ ଦିଲେ ଆଲିଙ୍ଗନ । କୁନ୍ତଲ ବୋଲେନ ମୋରେ ନା ଗୃହିଁ ବଦନ । କୁନ୍ତଲେ ବଲେନ ବର ମୁଖେ ଲଜ ନାହିଁ । ଗଲେ ଦଡ଼ି ଲୟାଁ ମର ଘରେ ଗିୟାଁ ତୁହି । ଘରେ ଗୟାଁ କେନ ବିଭା ନାହିଁ ତୁମି ହୟ । ପରନାରୀ

ଲୋଭ କର ପୁରୁଷ ବୋଲୁଅ ॥ ଲୋଭେ ପାପ ପାପେ ମୃତ୍ୟୁ ସଣବେ ପରାଣ । ହାସିବେ ତୋମାର ପ୍ରତି ରାଜା ପ୍ରଜା ଶୁନ । ବଶ କଲେ ସ୍ୱତନ୍ତ୍ର ଯେ ରମଣୀ ରାଖିବେ । ବଟପ ହଇୟାଁ କେନ ବିପାକେ ମରିବେ । ତାର ମଧ୍ୟେ ଏକ ବର କରିୟାଁ ଉପାୟେ । ମାଲ୍ୟାଣୀ ମନ୍ଦିରେ ଯାଏ କବିକର୍ଣ୍ଣ ଗାଏ ।

ଶୁନ ସର୍ବ ବିବାଦରେ କଲ୍ୟମ ପ୍ରବନ୍ଧ । ଅଲି ଯେନ ପଙ୍କଜେତେ ପାଏ ମକରନ୍ଦ । ପୁଟଲି କରିୟାଁ । ନିଲ ପାଞ୍ଚଶତ ଟାକା । ମେନକା ମାଲ୍ୟାଣୀ କାଛେ ହଲ ଗୟାଁ ଦେଖା ॥ ମିଠାଇ ନବାତ ଲଡ୍ଡୁ ଚିନି ଫାକାକଲ । ଝୋଲ ଭରି ସରୁଚୂଡ଼ା ଖାଇବାରେ ହିଲ ॥ ମାଉସୀ ମଉସାବୋଲେସମଧପାତ୍ରୀ ଏ। ପରିବାରେପାଟଶାଡ଼ୀଯତନେଯୋଗାଏ ମୋର ଏକ ନିବେଦନ ଶୁନ ଗୋ ମାଲ୍ୟାନି । କୁନ୍ତଲ ସୁନ୍ଦରୀ ସଙ୍ଗେ ମିଲାଅ ଆପନି ॥ ରାଖ ଗୋ ଆମାର ପ୍ରାନ ଧରି ଦୁଟି କର । ବଡ଼ାଇ ବିନଇ କରେ ହଇୟାଁ କାଫର ॥ ବରକନ୍ୟା ରାଜେ ଆଜ କହ୍ନା- ୟାଛେ କଥା । ପାଞ୍ଚ ସାତ ଟାକା ଦିବ ଆନେ ଦେ ବାରତା ॥ ଅର୍ଥ- ଲୋଭେ ମାଲଆଣୀ ଚଲେ ଧୀରେ ଧୀରେ । ପ୍ରବେଶ ହଇଲ ଗିୟାଁ କୁନ୍ତଲ ଗୋଚରେ ॥ ଧର ଧର କୁନ୍ତଲଗୋ ଚମ୍ପାମାଲ୍ ନିଅ । ଏକଲି ବସ୍ୟଛେ କେନ ସମସ୍ୟା ନା ଦିଅ ॥ ହଲ ଫଲ କରି ପାଶେ ନିଜ ଦୁଃଖ ଭାଷେ । ମାୟାବୀ ପୁତନା ଯେନ ଯଶୋଦାର ପାଶେ ॥ କପଟଶୃଙ୍ଖଳା କହେ ମେନକା ମାଲ୍ୟାଣୀ । କହ ଏବେ କୁନ୍ତଲକେମନି କଥା ଶୁନି । କି କଥା ହୟାଛେ ରାଜେ କହ ତୁମି ମୋରେ । ସ୍ୱରୂପ ବଚନ କନ୍ୟାକହ ଗୋ ଆମାରେ ॥ ତୁମାର ମାଲ୍ୟାଣୀ ଆମି ସେବଇଁ ନିକଟ ଆମାରେ କହିତେ କେନ ଅନ୍ତର କପଟ ॥ କାହାରେ କହିବ ଆମି ଗୁପତେର କଥା । ତୁମାର ବିନେ ଅନ୍ୟ କେହ୍ର ନା ଜାନେ ସର୍ବଥା ॥ କୁନ୍ତଲ ବଲେନ ଶୁନ ମେନକା ମାଲ୍ୟାଣୀ । ତୁମରେ ଆମାର କିଛୁ ନାହିଁ ଭିନ୍ନାଭିନ୍ନ ॥ ବିଶ ଶେଷେ ପୁଷ୍ପବାସେ ବସି

ଦୁଇଜନ । ପଶା ଖେଳେ ସ୍ୱାମୀ ମୋର ମାଗେ ଆଲିଙ୍ଗନ ॥ କହିଥିଁ ବିଶେଷ କଥା ପ୍ରବୋଧିଲୁଁ ଯଦି । କ୍ଷୁଧାହେଲେ ଅଲ୍ପମୋରେ ମାଗେ ଗୁନନିଧି ॥ ପେଡ଼ି ଜଳ ପଞ୍ଚ ଶଯ୍ୟ କରିଥିଁ ବ୍ୟଞ୍ଜନ । ସୁଖେଗଲେ ରାଜସଭେ କରିଥିଁ ଭୋଜନ ॥ ଏହିକଥା ହିସ୍ପାଣ୍ଡିଲ ଶୁନ ଗୋ ମାଳିଆନ । ଅପଣା ବୋଲିଥିଁ ତୋତେ କହିଲୁ ଅଖନ ॥ ମନ ବଡ଼-ବାରେ ତାରେ ଅର୍ଦ୍ଧେକ କହିଲ ॥ ଆରେକ ଅର୍ଦ୍ଧକ କଥା ଗୁପତେ ରଖିଲ ॥ ଶୁନିଥି ମାଳିଆଣି ବୁଢ଼ୀ ହାସେ ଖଲ ଖଲ । ଭଣ୍ଡବର କାଛେ ଗିଥିଁ କହିଲ ସକଳ ॥ ଏହିକଥା ଗିଥିଁ କହ କୁନ୍ତଲି ଗୋଚରେ । ତବେ ତୁମାର ପତି ବୋଲେ ନବେ ନିଜ ଘରେ ॥ ମେନକା ମାଳିଆଣି ମୁଖୁ ଶୁନିଥିଁ ସେ ବର । ଖସାଲି ହଇଥିଁ କୁନ୍ତଲି ବଚନ ବଲେ ॥ ଧପଧପ କରିଥି କବାଟ ଠେଲି ମାରେ । ନିର୍ଭୟେ ନିର୍ଲ୍ଲଜ୍ଜ ବର ଦିଲେ ସମାସ୍ତରେ ॥ ତକାଲି କବାଟ ଖୋଲି ଦିଅ ଗୋ ସୁନ୍ଦରି । ଯା ହଲ ରତେର କଥା କହିବ ସୁମରି ॥ କୁନ୍ତଲି ବଲେନ ଆଗେ କହ ସେହି ଖାନେ । ତବେତ ଆସିବେ ଭୁମି ମୋରେ ବିଦ୍ୟମାନେ ॥ ଭଣ୍ଡବର ବଲେ ଶୁନ ରାଜାର ତନିଥି ମୋର ଗେଲ ମାଲ ଦିଲ ସୁନ୍ଦର ଦେଖିଥି ॥ ତବେ ମହାରାଜା ସୁଖେ କରିଲ ପ୍ରଦାନ । ହାଣ୍ଡି ଘୋଡା ଦିଲ କତ ଯଉତୁକମାନ ॥ ପୁଷ୍ପବାସେ ପଶା ଖେଲେ ମାଗି ଆଲିଙ୍ଗନ । ରଙ୍ଗହାସେ ଭୁମି ତାଏ କଲେ ନିବାରନ ॥ ଉପବାସେ ବିଭାରାତେ ଅନ୍ନ ଖାଇଲୁଁ ମାଗି । ରନ୍ଧନ କରିଥିଁ ଭୁମି ଦିଲେ ଯଉଭାଗୀ ॥ ନାରିକେଲ ଜଲ ଦିଥିଁ କରିଲ ରନ୍ଧନ । ପଞ୍ଚଶସ୍ୟ ଛିଲ ତାରେ କରିଲ ବ୍ୟଞ୍ଜନ ॥ କନ୍ୟା ବଲେ ଜାନିଲମ ମାଳିଆଣି ଗୃହୁରି । କସେ କରି ଅନ୍ନ ଖାଲେ କହନା ସୁମରି ॥ ବର ବଲେ ଅନ୍ନଦିଲେ ସୁବର୍ଣ୍ଣର ଥାଲେ । ଷଡ଼-ରସେ ଭୋଜନ କରିଲୁଁ ଝିରାଜଲେ ॥ କନ୍ୟା ବଲେ ଲଜ ଖାଥିଁ ଗଲେ ଦିଅ ଦଡ଼ି । ଜାତି ନଷ୍ଟ କରିଛିଲ ମାଲିଆଣି ବୁଢ଼ୀ ॥

ଗୁପତେ ରଖିଲୁଁ ବଲେ ଆମି ଦୁଟିକଥା । ନୋହିଲେ ଅଖନ ଆମାର ହୈତେ ନିଜ ଭର୍ତ୍ତା ॥ ନା ଜାନିୟା ବର ସବ୍ ଗେଲ ନିଜ ଘରେ । ଭାବନା କରେନ କନ୍ୟା ପୁରୁଷେର ତରେ ॥ ଅସତୀ ଯେ ନାରୀ ଭୁଲେ ପରେର ଭର୍ତ୍ତାରେ । ସତୀ ହଲେ ଅବଶ୍ୟ ପତିର ଚେଷ୍ଟା କରେ ॥ ସ୍ୱାମୀର ଉଦ୍ଦେଶ୍ୟ ଦୁଃଖେ ଭାବେ ଖଲ ଖଲ । ଲଗିୟାଁ ଅଞ୍ଚଳ ପୁଛେ ନୟନେର ଜଲ ॥ ଅଞ୍ଚଲେ ପଡ଼ିୟାଁ କନ୍ୟା ସକଲ ଜାନିଲ । ସପ୍ତଗ୍ରାମେ ଆଛେ ସ୍ୱାମୀ ମନେତେ ରାଖିଲ ॥ ଶୁନ· ଶୁନ ମହାରାଜା ଆମାର ଉତ୍ତର । ନଉକା ଗଡ଼ାୟାଁ ତୁମି ଦିଅ ହେ ସତ୍ୱର ॥ ସପ୍ତ ଗ୍ରାମେ ଆଛେ ଆମାର ପ୍ରାନ ଗୁନମନ । ତରଣୀ ବାହିୟା ଆମି ଯାବ ହେ ଆପନ ॥ ଶୁନି ରାଜା ବେଗେ ଦିଲ ନୌକା ଗଡ଼ାଇୟାଁ । ଛଲ ଛଲ ଲୋଚନ କନ୍ୟାର ମୁଖ ଚାହିଁୟା ॥ ସପ୍ତ ଗ୍ରାମେ ଫେରି ଆଇଲ ଏକଶତ ବର । କୁନ୍ତଲ ତାହାର ପାଛେ ଚଲିଲ ସତ୍ୱର ॥ ନୃପତି ବଲେନ ଶୁନ ଏକଶତ ବର । ସ୍ୱୟମ୍ବରେ ଜିନି କନ୍ୟା କେ ଆନିଲ ଘର । ଲାଜେ ସବ୍ ହେଠମାଥା ନା ଦିଏ ଉତ୍ତର ।·ରାଜାର ସଭାଏ ନଗଲ ମଦନ ସୁନ୍ଦର ॥ ହାରାମୁଖି ନୌକା ଚାପି କୁନ୍ତଲ ସୁନ୍ଦରୀ । ବାହିୟାଁ ଜାହ୍ନବୀଜଲେ ଯାଏ ତରାତରି ॥ ସପ୍ତଗ୍ରାମେ ଗିୟା କନ୍ୟା ପ୍ରବେଶ ହଇଲ । ମନେ ମନେ କତ କଥା ଭାବତେ ଲାଗିଲ ॥ ଜଲେ ନାଵ ରାଖି ଗେଲ ରାଜାର ଗୋଚର । କେ ମୋରେ ଦିଏଛେ ବଧ ବୁଝହେ ସତ୍ୱର ॥ ରନ୍ଧେର ଗୁପତ କଥା ଯେ ବର କହିବେ । ସେହି ସେ ଆମାର ପତି ନିଶ୍ଚୟ ହଇବେ । ତୁମି ପତ୍ର ମହାରାଜ୍ କର ପ୍ରତିକାର । ନାହଲେ ଆପନା ଦେଶେ ଯାବୁ ପୁନର୍ବାର ॥ ସଭାଜନେ ମହାରାଜା ଜିଜ୍ଞାସା କରିଲ । କେ ବଧ କରେଛେ କିଛୁ ଟେର ନା ପାଇଲ ॥ ରାଜସଭା କରି ନନ୍ଦା କନ୍ୟା ଫିରେ ଦେଶେ । ହେନକାଲେ ପ୍ରବେଶ ମଦନ ରାଜାପାଶେ ॥ ଆଜ୍ଞା ହେଲେ ମହାରାଜା ଆମି ଦିବ କହିଁୟା । ସଭାର ମଧ୍ୟେତେ

କନ୍ୟା ଆନ ଫିରାଇଯାଁ ॥ ଶୁନ ଚମତ୍କାର ହୋଇଲ ଏକଶତ ବର । କବକଣ୍ଠି ବରଚଲ କାଲ୍ଲମ ସୁନ୍ଦର ॥

କନ୍ୟାକେ ଫିରାଇଯାଁ ଯଦ ଆସିଲ ନୃପତି । ମଦନସୁନ୍ଦର ତବେ କହେନ ଭୂପତି ॥ ଶୁନ ଗୋ ରାଜନ କନ୍ୟା ବରେର ବାରତା । ରାଧେ କାଲେ ଯତ ଗୁପ୍ତ ହୟେଛିଲ କଥା ॥ ସ୍ୱୟମ୍ବର ହୋଇଲ ଯବେ ରାଜାର ମନ୍ଦରେ । କତବର ଛିଲ ଯେ ମୁକୁଟ ବାନ୍ଧି ଶିରେ । ତାକେ ତୁମି ନା ବରିଯାଁ କ ଦେଖି ଭୁଲିଲେ । ଗୋରୁ ରାଖାଲକେ ଦିଲେ ଇଚ୍ଛା ବନମାଲେ ॥ ଲୋକେ ଲଜେ ହୋଇଲ ବଡ଼ ଦୁଃଖିତ ଭୂପତି । ଯରିବାରେ ଦିଲ ତାରେ ନବୋଢ଼ର ଧୋତି ॥ କବାଟ କଲାଯାଁ ରାଜା ଶୋଇଲ ମନ୍ଦରେ । ବସିଯା କାନ୍ଦେନ ରାନୀ ଦୁଃଖିତ ଅନ୍ତରେ॥ କୁଲ ପୁରୋହିତ ଡାକେରେ ବିଭା କରାଇଲ । ପୁଷ୍ପବାଁସେ ଦୁଇ ଜନେ ଗମନ କରିଲ ॥ ଯାଶା ଖେଲବାରେ ତାର ବଡ଼ ଛୁଧ ହୋଇଲ । ନିଶା ରାତ୍ରେ ଅନ୍ନ ଯେନ୍ତ୍ର ଖାଇତେ ମାଗିଲ ॥ ଅକ୍ଷୟଦାଣ୍ଡି ପୈଡ଼ ଜଲେ ରନ୍ଧନ କରିଲ । ନିଶାରାତ୍ରେ ସେହୁ ବର ଭୋଜନ କରିଲ । ଭୋଜନ କରିଯାଁ ବର କଲ୍ଲ ଆଚମନ । ତାମ୍ବୁଲ ଭାଙ୍ଗିଯାଁ ତୁମି ଦିଲେ ତତକ୍ଷନ ॥ ଜାନାଜାନି ହବେ ବଲେ ତୁମି ଗୋ ଉରାଏ । ଶ୍ମଶାନ କେ ନେଚେ ପାତା ରାଖିଲ ପୁତିଏ । ଏହାଯବେ ରାଜକନ୍ୟା ମିଥ୍ୟା ବଲେ ବଲ । ପ୍ରତ୍ୟକ୍ଷେ ତୋମାରେସଙ୍ଗେ ଦେଖାଇବ ଚଲ ॥ ଶୟନେତେ ଛିଲ ତୁମି ବର କରି କୋଲେ । ପରିଚୟ ଦିଯାଁଗେଲ ଲେଖିଆ ଅଞ୍ଚଲେ ॥ କନ୍ୟା ବଲେ ଅବଧାନ କର କ୍ଷିତିନାଥ । ଏହି କଥା ଗୁପ୍ତେ ଛିଲ ଏହି ପ୍ରାନନାଥ ॥ ମହାରାଜା କଲ୍ୟ ଦିଯା ମଦନସୁନ୍ଦରେ । ଘୋଡ଼ା ଯେ ଶିରୋପା ଦିଲ କୁନ୍ତଲର ତରେ ॥ ମଥାଏ ମୁକୁଟ ରାଜା କରିଲେ ଇନାମ । ଜାଗିର କରିଯାଁ ରାଜା ଦିଲ ସପ୍ତଗ୍ରାମ ॥ ଧନ୍ୟ ଧନ୍ୟ ମହାରାଜା କର ପୁରଷ୍କାର । ସପ୍ତ ଗ୍ରାମେ ନାମ ଯଶ ରଖିଲ ଆମାର ॥ ମଙ୍ଗଲ ଦୁନ୍ଦୁଭି ବାଦ୍ୟ ମଦନ-

ସୁନ୍ଦର । ବଦାନ୍ୱୟ୍ୟା କନ୍ୟାଲସ୍ନା ଯାଏ ନିଜଘର ॥ ସର୍ବଜନ ବର କନ୍ୟା ନିଜଘରେ ଯାଏ । ସୁମନ୍ତ କୁମନ୍ତ ଶୁନ୍ନ ଦେଖିବାରେ ଧାଏଁ ॥ ସୁମନ୍ତ କୁମନ୍ତ ସଙ୍ଗେ ମଦନସୁନ୍ଦର । ଦେଖି ଶୁଖାଇଲ ମୁଖ ବୁକେ ଲାଗେ ଡ଼ର ॥ ଆଶ୍ଚର୍ମା ନା ଜାଲଏ ଗୋ ଅଦଭୁତ କଥା । କେମନ ମଦନ ତବେ ଗିଯ଼ାଁ ଛିଲ ତଥା ॥ କେମନ ହଇଲ ବର୍ଷା ବୁଝା ନାହିଁ ଗେଲ । ମନ ବଡ଼ ଛନ୍ନ ଛନ୍ନ ବିପରୀତ ହଲ ॥ ସୁମନ୍ତ ବଲେନ ଯଖନ ସ୍ୱର୍ଗ ଲାଗେ ଗାଛ । ତଖନ ଆମାର ମନ ହଏ ସାତ ପାଞ୍ଚ ॥ ଏ କଥା କହିବା କାକେ କ କରି ଉପାଯ଼େ । ସ୍ୱାମୀ ଯଦି ଶୁନିବେନ ମାରିବେ ଦୁହାଁଏ ॥ ସୁମନ୍ତ ବଲେନ ଯାହା ଯେ ଛିଲ ସେ ହଲ । କେମନେ ନିସ୍ତାର ପାବ ଯୁକ୍ତି ମୋରେ ବଲ ॥ କୁମନ୍ତ ବୋଲେନ ବସ କିନିଯ଼ା ଆନିବ । ଏଖନି ଖୁଆଇଯ଼ାଁ ଘରେ ମଦନ ମାରିବ । ତବେତ ସେ କଷ୍ଟ ଘୁଞ୍ଚେ ଭଯ଼ଭ୍ରାନ୍ତି ଯାଏ । ନିଷ୍କେଟକେ ମାରିଲେ ଯେନ ପୁତନା ବେଡ଼ାଏ ॥ ହେନକାଲେ ବର କନ୍ୟା ଆଇଲ ମନ୍ଦିରେ । ସୁମନ୍ତ କୁମନ୍ତ ଯାଏ ବିଷ କିନିବାରେ ॥ ପ୍ରନାମ କରିଯ଼ା ଆଗୁ ସତ୍ୟନାରାଯ଼ନ । ସନ୍ନାମ କରିଯ଼ା କବିକର୍ଣ୍ଣ ରସେ ଗାନ ॥

ବର କନ୍ୟା ରଖି ଘରେ ସୁମନ୍ତ କୁମନ୍ତ । ବିଷ କିନି ଯାଏ ବନିକେର ଯେ ବସନ୍ତ ॥ ଅନ୍ତରେ ଜାନି ତବେ ସତ୍ୟନାରାଯ଼ନ । ଫକିରେର ବେଶଧରି ବନିକେ କହେନ ॥ ଆସେ ସୌଦାଗର ବନ୍ଧୁ ବିଷ କିନିବାରେ । ଏକ ରତ୍ତି ବିଷବାବା ନାହିଁ ହବେ ତାରେ ॥ ଯେନ୍ତ ତାରେ ବିଷ ଦିବେ ସହର ବାଜାରେ । ଏକ ଖ୍ୟାତ କରି ରାଜା ପୁଛିବେ ତାହାଁରେ । ଅତବଲି ସତ୍ୟପୀର ବାଜାରେ ଦାଣ୍ଡାଏ । ସୁମନ୍ତ କୁମନ୍ତ ବିଷ କିନିବାର ଯାଏ ॥ ବନିକରଦ୍ୱାରେ ଘରେ ସହର ବାଜାରେ । କଟୋରାଭରିଆକାଲକୂଟ ମାଗେ ତାରେ॥ ବନିକ ସକଲ ବିଶେଷ ନାମ ଲଇତେ । କେନ୍ତ ନାହିଁ ଦିଲ ତାରେ

କାଛେ ଖାଡ଼ା ହୈଛେ ॥ ଡାକନୀ ଯୋଗିନୀ ବଲି ଗାଳି ଦିଲ ତାଏଂ । ମାରିବାରତରେ ସବେ ଠେଙ୍ଗା ଲଏ ଧାଏଁ । କୋନଖାନେ କଲକୁଟ ବିଷ ନାମିକଲ । ଆକାଶ ଭଙ୍ଗିଆ ଯେନ ମାଥାଏ ପଡ଼ିଲ ॥ ମନଦୁଃଖେ ଦୁଇଯାଏ ପଡ଼ିଛେ ଗଙ୍ଗାରେ । କାନ୍ଦ କାନ୍ଦ ଦୁହୁଁ ଚଲେଯାଏ ନିଜ ଘରେ ॥ ପଥମଧ୍ୟେ ସତ୍ୟପୀର ତାରେ ଦେଖା ଦିଲ କାହାକା ଖାତିରେ ଦୁଃଖ କରୋ ହାମେ ବୋଲ ॥ କୋଡ ମାମଲା ତେରା ନା ହଏ ହାସିଲ । କହ ନା ଦୋଗ୍ରୁଟ ବାତ ଦାଣ୍ଡା ଏକ ତିଲ । ସୁମନ୍ତ କୁମନ୍ତ ବଲେ ଶୁନହେ ଫକୀର । ପବନ ତେଜକେ ଛିଲୁ ତୋମାର ଖାତିର ॥ ଭଲମନ୍ତ୍ର ଭୁମି ଆମାରେ ଶିଖାଇୟା ଦିଲେ । ଏକଥା ଶୁନିୟା ପତି ରାଖିବେ କି ଘରେ ॥ ଗାଛ ଚଡ଼ି ଗେଲୁଁ ଆମି କୁନ୍ତଲ ଚାରାଏ । କେମନେ ମଦନ ଘରେ ଜାନିଲ ତାହାଏ ॥ ହେନ କଥା ବୁଝି ହୋଠ ଲୁକାଇୟା ଛିଲ । କୁନ୍ତ-ଲକେ ବିଭାକରି ଘରତେ ରହିଲ ॥ ଏକଥା ଶୁନିୟା ପତି ଘରେ ନା ରାଖିବେ । ଦୁହାତିୟା ଠେଙ୍ଗାଲୟାଁ ପରାନେ ବଧିବେ ॥ ମଦନେ ମାରତେ ବିଷକିନିବାରେ ଗେଲୁଁ । ନା ପାୟା କନ୍ୟାର-ଦ୍ୱାରେ ଫିରିୟା ଅଇଲୁ ॥ ଫକୀର ବଲେନ ବେଟି ମେରା କିଆ ଦୋଷ ପତିରେ ଗୁଣ୍ଡିଆ କେନ ଗେଲ ଆପ ଖୋସ ॥ ମଦନ ସୁନ୍ଦର ତେରା କିୟା ଦୋଷ କିୟା । କହାକୁ ମାରେଗା ଉସେ କାଲକୁଟ ଦିଆ ॥ ସୁନ୍ଦୁଷ ବଧନେକା ପାପ କ୍ୟା କହୁଙ୍ଗା ତୋରେ । ନରକେ ପଡ଼େଗି ବେଟୀ ଏ ଦୋର ସଂସାରେ ॥ ଔଷଧି ବାତାୟା ଦିବ ଶୁନ ମେରା ବାତ । ଆମାର ଔଷଧି ଦିବେ ଗାଦୁରେ୍ଧର ସାଥ ॥ ତାହା ଖାଇୟା ମଦନ ହୋଏଗା ସଜ୍ଞାନ । ଉଡ଼କକେ ଭାଗେଗା ସେ ଲୟା ସେ ଜୀବଦାନ ॥ ଆପନ ଗରଳ ବିଷ ଜାହେ ଖିଲ୍ଲଏଗା । ଦେଓରେ ମାରେଗା ବୋଲ କଳଙ୍କ ରହେଗା ॥ ଅତବଲି ଜଡ଼ି ପୀର ହାତେ ଭୁଲ୍ଲା ଦିଲ । ତବେ ଖୁସେ ଦୁଇଯାଏ ମନ୍ଦରେ ଚଲିଲ ॥

ପିତାପ ବ୍ୟଞ୍ଜନ ଦୁଇ କରିଲ ରନ୍ଧନ । ମଦନେରତେ ଦୁଇଯାଏ କରାଏ ଭୋଜନ ॥ ଦୁଧେ ମିଶାଇଯାଁ ସେ ଔଷଧି ତାରେ ଦିଲ । ଖାଇଯା ସ୍ୱରୂପ ତବ ମଦନ ହଇଲ ॥ ଔଷଧି ଖାଇଯାଁ ଅଙ୍ଗ ସ୍ୱରୂପ ହଇଲ । ନିଷ୍ଟୁକେ ମାରିତେ କି ପୁତନା ଦୁଗ୍‌ଧ ଦିଲ ॥ ସ୍ୱରୂପ ହଇଲ ଅଙ୍ଗ ଔଷଧିର ତାପେ । ନଳରାଜା ଯେନ ଦାଗା ହୈଲ ଅଭିଶାପେ ॥ ମଦନ ସନ୍ଧାନ ହଯାଁ ଉଡ଼ିଯାଁ ଚଲିଏ । ବାଜହଯା ସତ୍ୟପୀର ତାର ପାଛୁ ଧାଏ । ସାନନ୍ଦ ବନନ୍ଦ ଯଥା ପାଠନାତେ ଆଛେ । ତଥା ଗିଯାଁ ସେହୁ ପକ୍ଷୀ ବସେ ଆମ୍ରଗାଛେ ॥ କୁନ୍ତଲ ସୁନ୍ଦରୀ ଘରେ ନା ଦେଖିଯାଁ ପତି । ମନସ୍ତାପ କରିଯାଁ ସେ କାନ୍ଦେ ଦୁଃଖମତି ॥ ସତ୍ୟନାରାୟନେ କରି ସହସ୍ର ପ୍ରନାମ । ଗାଏ ଦ୍ୱିଜ କବିକର୍ଣ୍ଣ ପ୍ରଭୁର ପୁରାନ ॥

ସାବଧାନେ ଶୁନ ହେ ସକଲ ବନ୍ଧୁଗନ । କାଲିମ ଭ୍ରମେର ସିନ୍ଧୁ ଅପୂର୍ବ କଥନ ॥ ନିକେତନ ନିଜପତି ନା ଦେଖି ନିଷ୍ଠାଏ । ନିଶ୍ୱାସ ଛାଡ଼ିଯାଁ ତବେ କାନ୍ଦେନ କନ୍ୟାଏ ॥ କୁଲବଧୂ କଥା ଯାତ କି ବୁଦ୍ଧି କରିବ । ନା ଦେଖିଲେ ପତି ପ୍ରାନ କେମନ ଧରିବ ॥ ଆମାର ଦରିଦ୍ର ନିଧି ହସ୍ତଗତ ଗୃନ୍ଧ । କଦୋଷେ ବଞ୍ଚିବେନ କାଟି ପ୍ରେମର ଫାନ୍ଦ ॥ ଶୋକେର ସାଗରେ ଉଠେ ଦୁଃଖେର । ଲହରୀ ଭୂମିରେ ପଡ଼ିଯାଁ କାନ୍ଦେ କୁନ୍ତଲ ସୁନ୍ଦରୀ ॥ ପାତାଲେ ପଡ଼ିଯା କାନ୍ଦେ ନାହିଁ ପାଏ କୂଲ । ଦାରୁନ ଦଇବ ଦୋଷେ ଉପୁଡ଼ିଲ ମୂଲ ॥ ସ୍ୱପାକେ ଘସିଯାଁ ଜଲେ ନାହିଁ ଲଗେ ଜଡ଼ । ଯଦି ବା ଲାଗି କି ଜଲେ ଜୋରେ ହନେ ତାଡ଼ । ମଦନେର ଅର୍ଥେ ଝୁରେ କୁନ୍ତଲ ସୁନ୍ଦରୀ । ଗୋପୀଗନ କାନ୍ଦେ ଯେନ ବୃନ୍ଦାବନେ ହେରି । ଅଷ୍ଟ ଅଲଙ୍କାରେ ଖସେ ଷୋଲଟି ସିଂହାର । ହନେ ହନେ ଦଶଦିଗ ହେରେ ଅନ୍ଧକାର । ସୁମନ୍ତ କୁମନ୍ତ କପଟେତେ କରେ ସ୍ୱର । ବ୍ୟାଘ୍ରଲିଯାଁ ପାଲାଇଲ ମଦନକେ ମୋର ॥ କୁନ୍ତଲର କାଛେ ଗିଯାଁ କରେ

କହେ ଅଭରୁନ । ମଦନେର କଥା ତବେ କରିଲ ସ୍ମରନ ॥ ନୃପତରେ ସୌଦାଗର ମାଗେନ ସାଞ୍ଚାନ । ପ୍ରଭୁର ପୁରନ କବକଣ୍ଠ ରସେ ଗାନ । ସାନନ୍ଦ ବନନ୍ଦ ଭଇ ମଦନ ଖାତରେ । ସଞ୍ଚାନ ଶିକାର ପକ୍ଷୀ ମାଗେ ନୃପତରେ । ବେଗକରେ ମୋର ଆଜ ଦିଅ ନୃପରାୟେ ॥ ଚିଡ଼ୟା ମାର ଡାକ ରାଜା ପରମାନ ଦିଏ ॥ ସାନନ୍ଦ ବନନ୍ଦେ ରାଜା ହୁଏ ମେହେରମାନ । ଧରିତେ ସଞ୍ଚାନ ପକ୍ଷୀ ଦିଲେ ପରମାନ ॥ ରାଜାଜ୍ଞା ପାଇୟା ତବେ ଯାତଣ ରାକ୍ଷାଟି । ସାତନଲ୍ ବାନ୍ଧେ କରି ନିଏ ଅଠା କାଠି ॥ ସଞ୍ଚାନ ଧରିତେ ତବେ ବନପଥେ ଯାଏ । ହେନ କାଲେ ଦେଖା କାରେ କଲେନ ଖୋଦାଏ ॥ ସଫେଦ ଡାକଆଁ ଶିର ଶିରମି ମାନତେ । ଶବରେ ଦର୍ଶନ ଯେନ ଦିଲ ରଘୁନାଥେ ॥ ପୁଛିଲେନ ଅଧମ-ତାରନ ନାରାୟନ । କହ ହେ ରାକ୍ଷାଟି ତେରା କାହେକୁ ପ୍ରୟାନ ॥ ଧନ୍ଲାମ କରିୟା କହେ ରାକ୍ଷାଟି ବଚନ । ସଞ୍ଚାନ ଧରିତେ ଆମି ଅଇଲୁ ବନ୍ଦନ ॥ ମହାରାଜା ଦିଲ ଆଜ୍ଞା ଲଙ୍ଘିବାରେ ନାରି । ସୌଦାଗର ମାଗି ଆଛେ ସଞ୍ଚାନ ଶିକାରି ॥ କୁନ ଗାଛେ ଆଛେ ସେହି ନାହିଁ ଦେଖି ଜନା । ମହା ମନଦୁଃଖେ ଯାଇ କରିୟା ଭାବନା ॥ ଫକିର ବଲେନ ବାବା ପାଇବେ ଏଖନ । ଅକଦାଏ ସତ୍ୟପୀରେ କବୁଲ ଶିରନି ॥ ରାକ୍ଷାଟି ସକଲବଲେ ଶୁନ ଦେଓୟାନ । ଆମାର ଶିରନି ଦିବ ପାଇଲେ ସଞ୍ଚାନ ॥ ହରଷେ ରାକ୍ଷାଟି ସନ୍ଧି ଶିରନି ମାନିଲ ॥ ଆମ୍ବଗାଛେ ସଞ୍ଚାନ ଯେ ବାତାଇୟାଁ ଦିଲ ॥ ତରୁତଳେ ରାକ୍ଷାଟି ସେ ହୟା ସାବଧାନେ । ସାତନଲ୍ ଦିଆଁ ଅଠା ଧରିଲ ସଞ୍ଚାନେ ॥ ରାଜାର ହଜୁରେ ସେହି ପକ୍ଷୀ ଦିୟାଁ ଭେଟି । ଘରେ ଗୟା ପୀରେ ପୁଜେ ସକଲ ରାକ୍ଷାଟି । ସାନନ୍ଦ ବନନ୍ଦେ ରାଜା ଦିଲେନ ସଞ୍ଚାନ । ବିଦାୟ ମାଗିୟା ଦେଶେ କରିଲ ପ୍ରୟାନ । ମାସ୍ତୁଲେ ବାନ୍ଧିୟାଁ ପାଲ ବସିଲେ ନାବର । ଆହ୍ଲ

ବାହୁଡ଼ି ଚଳି ଯାଏ ସୌଦାଗର ॥ ସାଗରସଙ୍ଗମ ଘାଟେ କତ ନବ ନାମ । କହୁଛନ୍ତି ବୋଲନ୍ତି ସାଧୁ ହୋଇଲ ସପ୍ତଗ୍ରାମ ॥ ସୁମନ୍ତି କୁମନ୍ତ ଘାଟେ ବାଦ୍ୟ ଧ୍ୱନି ଶୁନି । ଡାଙ୍ଗା ମଙ୍ଗଳସ୍ଥି ଏଲ ଦୁଇଯାଏ ପୁନି ॥ ସୁମନ୍ତକେ ସାନନ୍ଦ ଦଲେନ କାଥା ଫଣ୍ଡ । କୁମନ୍ତକେ ବାନନ୍ଦ ଦଲେନ ଗଜ ମୋଣ୍ଡ ॥ ଦୁଇଭାଇ ଏକଠାରେ ବସିୟାଁ ମନ୍ଦିରେ । ମଦନସୁନ୍ଦର ତାଙ୍କେ ସଞ୍ଚାନ ଖାଞ୍ଚରେ ॥ ସୁମନ୍ତ କହନ୍ତି କଥା ଶୁନ ସୌଦାଗର ବ୍ୟାଘ୍ର ମାରିୟା ପାଲିଇଲ ମଦନକେ ମୋର ॥ ତାହାର ଲାଗିୟାଁ କାନ୍ଦ ରହଦିବା ଘରେ । ଚକ୍ଷୁରେ ଅଶ୍ରୁଲ କାହିଁ ଦୁଃଖିତେ ଅନ୍ତରେ ॥ ତୁମାର ବଚନ ଯତ୍ନ ଲଙ୍ଘି ନା ପାରିଲୁ । ପ୍ରାନ ପ୍ରିୟ କରି ତାରେ ବଞ୍ଚି କରାଇଲୁ ॥ ଘରତେ ମଦନ କାହିଁ କାନ୍ଦେ ଉଚ୍ଚସ୍ୱରେ । ମନଦୁଃଖେ ଦୁଇଭାଇ ପଡ଼ିଲ ଭୂମିରେ ॥ ଲକ୍ଷ୍ମନ ପଡ଼ିଲେ ଯେନ କାନ୍ଦେ ରଘୁନାଥ । କାନ୍ଦେନ ହା ଭାଇ ବଲେ ଶିରେ ମାରେ ହାତ ॥ ଭାଇ ବଦଲେ ଭାଇବଧୂ ନକ୍ଷେତନେ ଗିୟାଁ । ଏ ସଞ୍ଚାନ ପାକ୍ଷୀରେ ପାଲନ୍ତେ ଆଶା ଦିୟା ॥ ମନଦୁଃଖେ ଦୁର ଯାଏ କ୍ଷଣେକ ରହିଲ । ସଞ୍ଚାନ ପିଞ୍ଜର ଲୟା କୁନ୍ତଲରେ ଦିଲ ॥ ପାଲନ କରେନ ତାରେ ସ୍ୱାମୀ ଆଶେ ପାକ୍ଷୀ ନରବଧି ଶୋକେ କନ୍ୟା ବୁକୁଫାଟେ ଦେଖି । ହେନମତେ କତ ଦିନ ଗୁଜରିୟାଁ ଗେଲ । ସତ୍ୟପୀର ସାହେବର ଦୟା ଉପୁଜିଲ ॥ କୁନ୍ତଲର ଦୁଃଖ ଦୂର କରିତେ ଖୋଦାଏ ! ଫକୀରେର ବେଶେ ଭିକ୍ଷା ମାଗେ କୁନ୍ତଲଏ ॥ କୁନ୍ତଲ ବଲେନ ଆମି ଅଭାଗନୀ ନାରୀ । ଖାଇତେ ଖରଚ ନାହିଁ ବଧିର ଖାଣ୍ଡରି ॥ କି ଜାନି କି ଧରେ ପ୍ରଭୁ କାଲ୍ୟ ଦୁଇଯାଏ ॥ ଜୀବନେ ମାରିଲ ପଡ଼ କହିଲୁଁ ତୁମାଏ ॥ ଫକୀର ବଲେନ ଦେଟି ଶୁନ ମେର ବାନୀ । ସତ୍ୟନାରାୟନେ ଯଦି କବୁଲ ଶିରନୀ ॥ ଫକୀରେର କଥା ଶୁନି କୁନ୍ତଲସୁନ୍ଦରୀ । ଖାଇବାର ଖୁଦୁ-ଦିଲ ଆନି ବାଟି ଭରି ॥ ହାସିୟାଁ ଫକୀରବଲେ ଶୁନି ମେର ବେଟି ।

# ସଦାନନ୍ଦ ସୌଦାଗର ପାଲା

( ୭ )

ରାମ ବଲ ରାମ ବଲ ନା କରନ୍ତେ ହେଲ । ଭବସିନ୍ଧୁ ପାର ହୈତେ ବାନ୍ଧ ଭୂମି ଭେଲ ॥ ଭାଇ ବଲ ବନ୍ଧୁ ବଲ ସମ୍ପତ୍ତିର ସାଥୀ । ଜୀବନ ଯାବାର କାଲେ ଗୋବିନ୍ଦହିଁ ଗତି ॥ ହରି ହରି ବଲ ହେ ସଭାର ସଜ୍ଜନ । କଲୁଷ ହରିବେ ବାବା ସତ୍ୟନାରାୟଣ । ମାଆ ଯେ ମାଉସୀମାନେ ଆସିଅଛ ଧାଇଁ । ସତ୍ୟନାରାୟଣ ପୂଜା ଦେଖିବାର ପାଇଁ । ଦେଖି ଶୁଣି ମନୋବାଞ୍ଛା ପୂରଣ କରିବ । ତୁମ୍ଭ ପୁଅ ପୌଅଙ୍କର ଆୟୁଷ ବଢ଼ିବ । ହୁଳହୁଳି ସଙ୍ଗେ ହରିବଲ ପଡୁଥିବ । ନ ଯିବ ଶମନପୁର ପାତକ ଛାଡ଼ିବ । ଏକାମନ ଏକଚିତ୍ତ ଦେଇ ସର୍ବେ ଶୁଣ । ଯାହାର ଯେ ମନୋବାଞ୍ଛା ହଇବେ ପୂରଣ । ନାରାୟଣ ପାଦତଳେ ନିଲାମ ଶରଣ । ଉଦ୍ଧାର କରିବେ ପ୍ରଭୁ ସତ୍ୟନାରାୟଣ । ସଦାନନ୍ଦ ସୌଦାଗର ପାଲା ହକିକତ । ରଚିଲେନ କବିକର୍ଣ୍ଣ କାଲିମେର ସୁତ ।

ଭାଗୀରଥି କୂଳେ ବସେ କାଞ୍ଚନ ନାଗର । ତାର ମଧ୍ୟେ ଲକ୍ଷପତି ରାଜା ରତ୍ନାକାର । ସାନନ୍ଦ ବିନୋଦ ସେ ଦେଶର ସୌଦାଗର । ତାର ଜ୍ୟେଷ୍ଠ ଭାଇ ନାମ ମଦନସୁନ୍ଦର । ଯେ ଦିନ କୁନ୍ତଳାକେ ମଦନ ବିଭା ହେଲ । କ୍ରମନ୍ତି ସୁମନ୍ତି ତାରେ ସଞ୍ଚନ କରିଲ । କତି ଦିନେ ସୌଦାଗର ଆସେ ନିଜଘରେ । ମଦନ ସଞ୍ଚାନ ପକ୍ଷୀ ଆଟେନ ସଙ୍ଗତରେ । ମଦନର ଜାୟା ହୁଏ କୁନ୍ତଲ କାମିନୀ । ଅକଦାଏ ସତ୍ୟପୀରେ ମାନିଲ ଶିରନୀ । ପୂଜା ବଢ଼ାଇୟା ସେହୁ ଶିରନୀ ବାଣ୍ଟିଲ । ମଦନ ସଞ୍ଚାନ ମୁଖେ ଶିରନୀ ଯେ ଦିଲ । ଯଖନ ଶିରିଣୀ ଟିପିଲ ମଦନସୁନ୍ଦର । ତଖନି ହଇଲ ତାର ମାନୁଷ ଶରୀର ।

ଅଞ୍ଜସ ସଞ୍ଜସ ଆଦ ଚୂର୍ଣ୍ଣ ହୋଇଗଲା । ମାନୁଷରୂପେ ମଦନ ଆସି ପ୍ରବେଶିଲା । ସୁମନ୍ତ କୁମନ୍ତ ଦେଖି ହେଲେ ଚମତ୍କାର । ସାନନ୍ଦ ବଲେ ବନୋଦ ଏ କ ସମାଚାର । ସହରର ନଗରେ ସବେ ହେଲ କାନାକାନ । ହାଟ ହଇଲ ବାଜାରେ ସକଲ ଲୋକ ଶୁନ । ରଜାର କୋଟାଲ ଯେବେ ବାଜାରେ ଶୁନଲ । ରାଜ ଦରବାରେ କଥା ଯାହ୍ୱର କହଲ । କୋଟାଳିଆ ବଲେ ଆହେ ଶୁନ ନୃପମନ । ବାଜାର ହଇଛେ ଆଚମ୍ବିଛ କଥା ଶୁନ । ସାନନ୍ଦ ବନୋଦ ନାମେ ଦୁଟି ସୌଦାଗର । ତାର ଜ୍ୟେଷ୍ଠ ଭାଇ ନାମ ମଦନ ସୁନ୍ଦର । କୁନପାପେ ମଦନ ସାଞ୍ଚାନ ହୋଇଛିଲ । ଆଜ କୋନ ପରମାର୍ଥେ ଶରୀର ପାଇଲ । ରଜା ବଲେ କୋଟାଲ ଏ କୌତୁକ କାହାନି । ବେଦ ପୁରାନେ ଏ କଥା ଆମି ନାହିଁ ଶୁନି । ସାଞ୍ଚାନ ମାନୁଷ ହେଲ କେମନ । ଖାଲି ଏମନ କଥା ଆଚମ୍ବିତ ଦୁନିଆଁ ଭିତରେ । ସାନନ୍ଦ ବନୋଦ ଆମାର ହଜୁରେ ଆନିବେ । ହକିକତ କଥା ସବ ତବେ ଜାନାଯାବେ । ରାଜାର ହୁକୁମେ କୋଟାଳିଆ ଚଲିଗେଲ । ହାଧବ ମହଲେ ଗିୟା ପ୍ରବେଶ ହଇଲ । କୋଟାଳିଆ ବଲେ ତୁମି ଶୁନ ସୌଦାଗର । ରାଜାର ହୁକୁମେ ଚଲ ଦରବାର ପର । ଏହା ଶୁନ ଦୁଇ ଭାଇ ତାହାର ହଇଲ । ଅନେକ ରକମ ଭେଟି ଦ୍ରବ୍ୟ ସଙ୍ଗେ ନିଲ । ଆଗେ କୋଟାଳିଆ ପାଛେ ଦୁଇ ସହୋଦର । ମୁଲାକାତ ହଲ ଗିୟା ରାଜାର ଗୋଚର । ଭେଟିଦ୍ରବ୍ୟ ରାଖିଦିଲ ମହାରଜା ପାଶ । ଯୋଡ଼ ଜୁହାର କରି ବନ୍ଦନାତେ ବସେ । ମହାରାଜା ବଲେ ତୁମି ଶୁନ ମହାଜନ । ତୋମା ଜ୍ୟେଷ୍ଠ ଭାଇ କଥା ହଇଲ କେମନ । କୋନ ପାପେ ମଦନ ସାଞ୍ଚାନ ହୋଇଛିଲ । ଆଜ କୋନ ପରମାର୍ଥେ ଶରୀର ପାଇଲ । ସାନନ୍ଦ ବନୋଦ ବଲେ ଶୁନ ନୃପମନ । ମଦନର ହକିକତ ମୋରା ନାହିଁ ଜାନ ।

ତୋମାର ହୁକୁମେ ଗେଲୁ ଚନ୍ଦନ ବେପାରେ । ସେଖାନେ ଥାକଲୁ କଣ୍ଡ ଦ୍ୱାଦଶ ବତ୍ସରେ । ଆଜ ଆମି ନିଜ ଗୃହେ ପ୍ରବେଶ ହଇଲୁଁ । ମଦନେର ହକକତ କଛୁ ନା ଜାନଲୁ । ରାଜା ଆଜ୍ଞା ଦିଲ୍ ସାଧୁ ଯାଅ ନିଜଘରେ । ହକକତ ବୁଝି କାଲି କହିବେ ଆମାରେ । ହେନ ଶୁନ ଦୁଇ ଭାଇ ଜୁହାର ଉଠାଏ । ଆଗେ ପିଛେ ହଏ ତାର ଗ୍ରିହେ ଚଲେ ଯାଏ । ସାନନ୍ଦ ବଲେ ବିନୋଦ ବାତ୍ କହି ତୋରେ । ମଦନେର ହକକତ ଜିଜ୍ଞାସିବ କାରେ । ବିନୋଦ ବଲେନରେ ଭାଇ ଶୁନ ନିବେଦନ । ଗ୍ରିହେ ଛିଲ ସୁମନ୍ତ କୁମନ୍ତ ଦୁଇଜନ । ସୁମନ୍ତ କୁମନ୍ତ କାଛେ ଆମି ଜିଜ୍ଞାସିବ । ମଦନେର ହକକତ ତା ମୁଖେ ଶୁନିବ । ଏତବଲି ଦୁଇଭାଇ ଘରେ ପ୍ରବେଶିଲ । ସୁମନ୍ତ କୁମନ୍ତ କନ୍ୟା କାଛେ ଡାକାଇଲ । ସାନନ୍ଦ ବିନୋଦ ବଲେ ଶୁନରେ କାମିନୀ । ମଦନେର ହକକତ ହଇଲ କେମନି । କୋନ ପାପେ ମଦନ ସଞ୍ଚାନ ହୟାଛିଲ । ଆଜ କୋନ ପରମାର୍ଥେ ଶରୀର ପାଇଲ । ପ୍ରାନପତି ମୂର୍ଖ କନ୍ୟା ହେନ କଥା ଶୁନି । ସୁମନ୍ତ କୁମନ୍ତ ଦୁଇ ହଏ କାନା-କାନି । ସୁମନ୍ତ ବଲେ କୁମନ୍ତ ଶୁନ ନିବେଦନ । ପ୍ରାନପତି ପୁଛେ ମୋର ମନେର ମରମ । ଏତବଲି ଦୁହେଁ ଯାଏ ଫିକର ବାନ୍ଧିଲ । ବାଞ୍ଛାଇୟା ପ୍ରାନପତି ଆଗତେ କହିଲ । ତୁମି ପ୍ରାନନାଥ ଗେଲେ ଚନ୍ଦନ ନଗରେ । ଆମାହିକେ ଜାଗିରହେ ମଦନ ସୁନ୍ଦରେ । କହିତେ କହିତେ ଗେଲ ଦ୍ୱାଦଶବତ୍ସରେ । ଏଦିନ ମଦନ ଗେଲ ସ୍ନାନେର ଘାଟରେ । ଗଙ୍ଗାକୂଲେ କୋନ ଦେବୀ ତାରେ ଶାପ ଦିଲ । ସଞ୍ଚାନ ହଇ ମଦନ ଆସମାନେ ଗେଲ । ସାନନ୍ଦ ବଲେ ବିନୋଦ ଶୁନ ନା ଉତ୍ତର । ନିତାନ୍ତ ଜାନିନୁ କଥା କନ୍ୟାର ଫିକର । ମଦନସୁନ୍ଦର କାଛେ ଆମି ଜିଜ୍ଞାସିବ । ହକକତ କଥା ଆମି ତା ମୁଖେ ଶୁନିବ । ଏତବଲି ଦୁଇଭାଇ ଅନ୍ଦରେତେ ଗେଲ । ଜ୍ୟେଷ୍ଠ

ଭାଇ ମଦନକେ କୋଳେ ବସାଇଲ । ସାନନ୍ଦ ବିନୋଦ ବଚନେ
ଶୁନରେ ମଦନ । ତୋର ହକିକତ ଭାଇ ହଇଲ କେମନ ।
କୋନପାପେ ତୁଇ ରେ ସଞ୍ଚାନ ହଯ୍ଯାଛିଲ । ଆଜ ପୂନଃ କୋନ
ଧର୍ମେ ମାନୁଷ ହଇଲ । ଦୁଭାଇ ମୁଖେ ମଦନ ଏ କଥା ଶୁନ୍ଯା ।
ଅତିଦୁଃଖେ କହେ ତବେ କାନ୍ଦିଆ କାନ୍ଦିଆ । ମଦନ ବଲେ ରେ
ଭାଇ କପାଲେର ଲେଖା । ନଡ କୁମତି ହଲ କାଲଶତ୍ରୁ ଦେଖା ।
ତୁମି ଦୁଇଭାଇ ଗେଲ ଚନ୍ଦନ ବେପାରେ । ସୁମନ୍ତ କୁମନ୍ତ ଜାଗି
ରହେଛିନୁ ଘରେ । ଏକଦିନ ରାତକାଲେ ପ୍ରଭୁ ନାରାୟନ । ସ୍ଵପନ
ସ୍ୱପନେ ମୋରେ ଦିଲ ଦରଶନ । ସ୍ଵପନ ପଲଙ୍କ ମୋରେ ସତ୍ୟ-
ପୀରେ ଦିଲ । ଗଙ୍ଗାକୂଲ ବଡ ବୃକ୍ଷେ ଦାଖିଲ କରିଲ । ଆସମାନେ
ବୃକ୍ଷ ଗେଲ ପୀରେର କୃପାରେ । ପ୍ରବେଶ ହଇଲ ଗିଯ୍ଯା ମକାଉ
ସହରେ । କୁନ୍ତଧ୍ଵଜ ରଜାଜେମା କୁନ୍ତଲ ଚନ୍ଦ୍ରମୁଖୀ । ମୋର ଗଲେ
ମାଲଦିଆ ନିଲ ଇଚ୍ଛାବର । ରାତକାଲେ କୁନ୍ତଲରେ ବଞ୍ଚ ଯେ
ହଇନୁ । ସେହି ବାଟଗାଛେ କନ୍ୟା ଲଇଆ ଆଇନୁ । କନ୍ୟାକେ
ଯଖନ ଦେଖେ ସୁମନ୍ତ କୁମନ୍ତ । ଆମାରେ ଜିଜ୍ଞାସା କରେ ତଖନ
ଯୁବନ୍ତ । ସୁମନ୍ତ କୁମନ୍ତ ବଚନ ଶୁନ ହେ ମଦନ । କନ୍ୟାକେ
ଆନିଲେ ତୁମି କେମନ ଭବନ । ଆମି ଶିଶୁମତି ଛନ୍ଦ ମନ୍ଦ ନା
ଜାନିଲୁ । ହକିକତ କଥା ସବୁ ବୁଝାଇ କହିଲୁଁ । ଯଖନ ଶୁନିଲ
କନ୍ୟାଆମାର ଉତ୍ତର । ମୋରେ ମାରିବାରେ ସେହି ବାନ୍ଧିଲଫିକର ।
ଜହର ଖୋଜିଲ ବୁଲି ସହର ବାଜାରେ । ଜହର ନା ମିଳେ ତାରେ
କ୍ଷୀରେର ଦିପାରେ । ସତ୍ଯନାରାଯ୍ଯନେ କଚ୍ଛୁ ଦୁଗ୍ଧ କଲ୍ପ ହିଲ ।
ଖାଇପାଇ ମହାପ୍ରଭୁ ସଞ୍ଚାନ କରିଲ । ପ୍ରବେଶିନୁ ତବ କାଛେ ଚନ୍ଦନ
ବେପାରେ । ତୁମି ଦୁଇଭାଇ ମୋରେ ଆନେ ନିଜ ଘରେ । ଗ୍ରିହେ
ପ୍ରବେଶିଯ୍ଯା ହିଲେ କୁନ୍ତଲ ଗୋଚରେ । ଖୁଦ୍ର ହକ ଶିର୍ନି ହିଲ
ସେହି ସତ୍ୟପୀରେ । ଆମାର ମୁଖେତେ ଶିର୍ନି ସେହି ଲହ୍ଯା ହିଲ ।

ପ୍ରସାଦ ପାଇବା ମାତ୍ରେ ନର ଦେହ ହେଲ । ଯାହାର ପ୍ରସାଦେ ହଲ ପକ୍ଷୀ କଲେବର । ତାହାର ପ୍ରସାଦ ପାଇ ମାନୁଷ୍ୟ ଶରୀର । ତବ ଆଗେ ଆଉ ଆମି କି କହିବ ଭାଇ । ସୁମନ୍ତ କୁମନ୍ତ ମୋର ଜୀବନ ମୁଦେଇ ।

ଓଡ଼ିଆ—କରମ ଅବେକକୁ ଧରମ ଗ୍ରହିଲ୍ ଏହି କାଳକୁ । ରାଜା ଆଗେ ଯାଇ, କି କହିବ ଭାଇ, ଯୋଡ଼ିଲେଣି ଦଶ ନାସି-କୁଳକୁ । ସ୍ତ୍ରି ରାଜାଙ୍କ ଦୋଷୀ ଅଟନ୍ତି ସାହସୀ, ରୁଷ ବସିଥାନ୍ତି କଥା ନ କକୁ ।

( ପାଲ ) ମଦନସୁନ୍ଦରଠାରୁ ଶୁନ ବେନ ଭାଇ । ରାଜ-ଦରବାରର ବାହାରଲେ ବେଗହୋଇ । ଯେଉମନ୍ତ ମଦନ ସନ୍ଧାନ ହଯ୍ୟାଛିଲ । ରାଜା ଆଗେ ସାନନ୍ଦ ବନୋଦ ଜାନାଇଲ । ସୁମନ୍ତ କୁମନ୍ତ ଦୁଇ କନ୍ୟାଙ୍କ ଫିକର । ମଦନେର ପ୍ରତି ଯେଇ ଯତ ବ୍ୟବହାର । ହଏଛିଲ ଯତ କଥା କହେ ଦୁଇଭାଇ । ଶୁନିୟା ଚମକିତ ହେଲ ସଭାଏ ସବାଇ । ମହାରାଜା ବଲେ ଭୁମି ଶୁନ ମହାଜନ । ଅବଶ୍ୟାସୀ ହେଲ ସେଇ କନ୍ୟା ଦୁଇଜନ । ଶୁନ ହେ ସାଧବ ଆମି କହି ଯେ ତୁମାରେ । ଆର ସେହି ଦୁଇକନ୍ୟା ନା ରାଖିବ ଘରେ । ଆମାର ହୁକୁମ ଯଦ ତୋମାରେ ମାନବେ । ନଗ୍ରେର ବାହାରେ କନ୍ୟା ଶିର କଟାଇବେ । ରାଜର ଖାତରେ ଆମି ଘରୁ ଟାକାଦିବ । ଦୁଟି ରାଜକନ୍ୟା ବାଛୁ ବିଭା କରାଇବ । ଏତଶୁନି ଦୁଇଭାଇ ନଜରି ହେ ଗେଲ । ଜ୍ୟେଷ୍ଠ ଭାଇ ମଦନକେ କୋଲେ ବସାଇଲ । ସାନନ୍ଦ ବନୋଦ ବଲେ ଶୁନରେ ମଦନ । ହୁକୁମ କରେଛେ ଆଜ ଦଣ୍ଡେର ରାଜନ । ଏହି ଆଜ୍ଞା ଆମାର ଦିଆଛେ ଦଣ୍ଡଧର । ଶିର କାଟାଇବ କନ୍ୟା ରାଜ୍ୟେର ବାହିର । ଇହା ଶୁନି ମଦନ ଯେ ବିସ୍ମୟ ହଇଲ । ରାମ ରାମ ବଲିୟା ସେ କର୍ଣ୍ଣେ ହାତ ଦିଲ ।

ଊହା—ଯାହା କହିଲ ଭାଇ, ତାହା ଶୁଣି ମୋର କମ୍ପୁଛି ଦେହୀ । ସ୍ତ୍ରୀହତ୍ୟା ଦୋଷ, ଲାଗିବ ଅବଶ୍ୟ, ଏହା କେ ସମ୍ଭବ ମାନବ ହୋଇ । ୧ । ଲେଖିଛି ପୁରାଣେ, ଏମନ୍ତ ମୁଁ ଜାଣେ, ତାହା ମୁଁ ନ ପାରେ କହି । ଗୁରୁ ବପ୍ରଦ୍ରୋହୀ, ଠାରୁ ସ୍ତ୍ରୀହତ୍ୟା, ଜଗତେ ମହାପାତକ ଅଟଇ । ୨ ।

(ପାଲା)—ମଦନ ବଲେ ରେ ଭାଇ ବଡ଼ ବଡ଼ମ୍ୱନ । ପ୍ରଥମ-ବୟସୀ ଏହୁ କନ୍ୟା ଦୁଇଜନ । କ କାରଣେ ବଧିବେ ଏ ଦୁଇ ରସିକମଣି । ଦାସୀ ବାନ୍ଧ ସଙ୍ଗେ ତାଙ୍କୁ ହଏ ଅଭାଗିନୀ । ଶୁନ ଶୁନ ପ୍ରିୟଭାଇ ଆମାର ବଚନ । ସ୍ତ୍ରୀହତ୍ୟା ମହାପାପ ନା ଯାଏ ଖଣ୍ଡନ । ଆଉ ଯତ ଦୋଷ ସବ ପ୍ରାୟଶ୍ଚିତ୍ତେ ଯାଏ । ନାରୀହତ୍ୟା ଦୋଷ କଭୁ ଖଣ୍ଡନ ନା ଯାଏ । ଏକଜନ୍ମେ ପାପ କୈଲେ ଶତ-ଜନ୍ମ ଯାଏ । ଯେ ଜନ କରେ ଏ ହତ୍ୟା ତାର କନ୍ଧେ ଥାଏ । ତୁମ୍ଭେ ତ ବୁଝିଛ ଭାଇ ଶାସ୍ତ୍ର ଓ ପୁରାନ । କେମନ୍ତ କରି ବଧିବ ସ୍ତ୍ରୀ ଦୁଇଜନ । ପ୍ରାଣେତେ ନା ମାରି କମ୍ପା ଘଉଡ଼ି ନା ଦେଇ । ଦାସୀଗଣ ସଙ୍ଗେ ରହୁ ଦେଖା ଭାତ ଖାଇ । ସାନନ୍ଦ ବିନୋଦ କହେ ମଦନସୁନ୍ଦର । ରାଜାର ହୁକୁମ ଅଛି ଏହି ପରକାର । ରାଜାର ହୁକୁମ ଯଦି ଅନ୍ୟଥା କରିବ । ଏ ଦେଶ ଛାଡ଼ିଯିବା ତବେ କୋନଦେଶେ ଯାବ । ପାପ ପରମାଦେ ଚିନ୍ତା ନାହିଁରେ ମଦନ । ନିଶ୍ଚୟ ବଧିବ ଆମି କନ୍ୟା ଦୁଇଜନ । ମଦନ ବଲେ ରେ ଭାଇ ଶୁନ ନିବେଦନ । ନିତାନ୍ତ ବଧିବେ ଯଦି କନ୍ୟା ଦୁଇଜନ । ଯେ ରୂପେ ମାରିବେ ପୁନଃ ଦୋଷ ନାହିଁ ହବେ । ତାହାର ଫିକର ଆମି କହୁଅଛି ତବେ । ତମ୍ଭାର ପେଟାରି ଦୁଟା ତୟାର କରିବେ । ତାହା ମାଝେ ଦୁଇକନ୍ୟା ଦାଖଲ କରିବେ । ଭସାଇଯିବା ହବେ ତାହା ଦରିଆ ଭିତରେ । ଜଳେ ଡୁବି ମରୁ କମ୍ପା ଖାଉକ ମଗରେ । ନତୁବା ଭାସିଯିବା କୋନ ଦେଶେତେ ଲାଗିବ । ଏଥି ଦୋଷ ଭାଇ ହେ

ତୋମାର ନା ହଇବେ । ଏତ ଶୁନି ଦୁଇଭାଇ ଚଳିଲ ବାଜାରେ । ପେଟରା ଗଢ଼ିତେ ତବେ ଆନେ କାରିଗରେ । ସୁମନ୍ତ କୁମନ୍ତ କନ୍ୟା କାଛେ ଡାକାଇଲ । ଭୁଲାଇୟା ଦିବ ବଲି ତାହାରେ କହିଲ । ଯତ ଆଭରନ ଛିଲ କନ୍ୟା କଲେବରେ । ସକଲ କାଢ଼ିଆ ନିଲ ଦୁଇ ସୌଦାଗରେ । କର୍ଣ୍ଣର କୁଣ୍ଡଲ ନିଲ ହୀରସାର ଚୂଡ଼ି । ଗୃପସର ପଦକ ଯେ ଅଷ୍ଟରନ୍ନ ଜଡ଼ି । ପାଏର ପାହୁଡ଼ ନିଲ ହାର କର୍ଣ୍ଣଫୁଲ । ଜାଇ ଯୂଈ ଚମ୍ପକ ଯେ ସେବତୀ ବକୁଲ । ନାସାର ବସନ ସାଧୁ ନଲେନ କାଢ଼ିୟା । ସୁମନ୍ତ କୁମନ୍ତ କହେ କାନ୍ଦିୟା କାନ୍ଦିୟା । ଦୁଇଯାଏ କାନ୍ଦକହେ ପ୍ରାନପତି ପାଶ । ଗାଏ ଦ୍ୱିଜ କବିକର୍ଣ୍ଣ ପୀର ଇତିହାସ ହେ ।

ଡୂହା—ପୋଡ଼ୁ ପୋଡ଼ା କରମ ଧିକ ହେଉ ନାରୀଙ୍କ ଜନମ ହେ ।

(ପାଲ) ନାରାୟନ ପାଦତଲେ ପ୍ରନାମ ଆମାର । ଯାହାର ଆଜ୍ଞାଏ ପଦ କରିବ ପ୍ରଚୁର । ଏହିକାଲେ କୁମନ୍ତ ଯେ କାନ୍ଦିୟା କାନ୍ଦିୟା । କହେ ପତି ଆଗେ କଥା ଜାହିର କରିୟା । ଶୁନ ଆହେ ପ୍ରାନପତି କହି ଯେ ତୁମାରେ । ପୁରାନେର କଥା କିଛୁ ବଲିବ ଗୋଚରେ । ତ୍ରେତୟାତେ ପୂର୍ଣ୍ଣବ୍ରହ୍ମ ରାମଚନ୍ଦ୍ର ଛିଲ । ଜନକ-ନନ୍ଦନୀ ସେନ ବନବାସ ଗେଲ । ପଞ୍ଚବଟୀ ବନେ ରାମ ଦିଲ ଦରଶନ । ସୀତୟା ହରିଲ ନିଲ ଲଙ୍କାର ରାବନ । ସୀତା ହରିଲେ ରାମଚନ୍ଦ୍ର ସାଗର ବାନ୍ଧିଲ । ଦଶଶିର ବଧକରି ସୀତାଦେବୀରେ ନିଲ । ପ୍ରବେଶ ହଇଲ ରାମ ଅଯୋଧ୍ୟା ନଗରେ । ଦଣ୍ଡଛତ୍ର ଧରାଇଲ ସିଂହାସନ ପରେ । ସୀତା ଠାକୁରାନୀ ଯେ ତ୍ରୈଲୋକ୍ୟ ଛନ୍ଦ୍ରାମନ । ଅସୁରେର ଘରେ ବନ୍ଦ ହୋଇଲ ଆପନ । ତା ଉପରେ ରାମଚନ୍ଦ୍ର ନ କରିଲେ ରୋଷ । ତୁମି ପ୍ରାନନାଥ ମୋରେ କି ଦେଖିଲେ ଦୋଷ । ସୀତାସମ ଅଭାଗିନୀ ନାରୀ ଆମି ନଇ ।

ଆମାଠେ ଭତାଯ଼ା ଦବେ କୋନ ଦୋଷ ପାଇଁ । ବିନୋଦ କହିଲ ତାକେ ଶୁନ ଲୋ କାମିନୀ । ତୁମି ଆର ସୁମନ୍ତ ଯେ ବଡ଼ ରସିକଣୀ । ଅନ୍ୟାନ୍ୟ ଦୋଷ କଲେ ରାଖିଛେ ଭଜନ । ମଦନେର ଅପରାଧୀ ତୋରା ଦୁଇଜନ । ଏତ କହି ବିନୋଦ ଯେ ଘୋର ଘୋଷା ଦିଲ । ଦୂର କଲଙ୍କିନୀ ବଲା ତାଡ଼ାଇୟା ଦିଲ । ଏହି କାଲେ ସୁମନ୍ତ ଯେ କାନ୍ଦିୟା କାନ୍ଦିୟା । ସାନନ୍ଦ ଆଗେତେ କହେ ବିନୟ କରିୟା । ଶୁନ ଆହେ ପ୍ରାନପତି ଆମାର ବଚନ । କହିବ ତୋମାକେ ଏକ କଥା ପୁରାତନ । ଯେ ଦିନ ସାଧବ ତୁମି ବିଭାହେଲ ମୋରେ । ବର କନ୍ୟା ହୈୟା ବସି ବେଦୀର ଉପରେ । କନ୍ୟାଜାତି ବରଜାତି ପୁରୋଧା ବ୍ରାହ୍ମନ । ହୋମକୁଣ୍ଡ ମଧ୍ୟେତେ ସ୍ଥାପିଲ ହୁତାଶନ । ଏହିକାଲେ ପିତା ମୋର ଦଶଫଲ ଦିଲ । ଦଶଦିଗ ପାଲକେ ସେ ସାକ୍ଷୀ କରାଇଲ । ଦଶଫଲ ଉଠାଇଲେ ଆପନାର କରେ । ଦଶଦୋଷ ମାଗିନଲ ରହିବେଦୀପରେ । ଦଶଦୋଷେ ଏକଦୋଷ କି ଦେଖିଲେ ମୋର । କୋନ ଦୋଷେ ଘସାଇବେ ଦରିଆ ଭିତର । ସୁମନ୍ତର କଥା ସାଧୁ କର୍ଣ୍ଣେ ନା ଶୁନିଲ । ଦୂର କଲଙ୍କିନୀ ବଲ ଛାଡ଼ାଇଆ ଦିଲ ।

ଢୁଳି—କେଉଁ ଦୋଷ ଦେଖିଣ, ଦରିଆକୁ ଫିଙ୍ଗିଦିଅ ପୁଣ ହେ ।

( କହ ଶ୍ରୀରାମରେ ବନକୁ ଯିବୁ—ବୃତ୍ତେ )

ଚୌପଦୀ—କହ ମୋ ନାଥ ହେ କି ଦୋଷ ଦେଖି, କାହା କଥା ଶୁଣି ନିଜର ତରୁଣୀ, ଅନ୍ତର କରୁଛ ସ୍ନେହ ଉପେକ୍ଷି । ଘୋଷା । ବିଦେଶକୁ ତୁମ୍ଭେ କଲ ଗମନ, ଗୃହେ ଜଗିଥିଲେ ଭାଇ ମଦନ । କେଉଁ ଅବଗୁଣ, ଦେଖିଲ ଆପଣ, କରଉଛ ଏଡ଼େ ନିରମାଖି । ୧ । ମୋର ଜାଣିବାରେ ନାହିଁଟି ଦୋଷ, ବୃଥା କଥାରେ କିମ୍ପାଁ କର ରୋଷ । ଜାହ୍ନି ମୋର ସାହା, ତୁମ୍ଭ ବିନା ନାହା, କିମ୍ପାଇଁ ମୋଠାରେ ଏଡ଼େ ଅସୁଖୀ । ୨ । ପ୍ରାଣରୁ

ଅଧିକ ଥିଲ ଯେ କର, ଏବେ କରୁଅଛ ଯାଚ ଉଗାର । ମୁହିଁ ହୀନା ନାରୀ, ହେବଇଁ କାହାର, ଆଉ ମୁଁ କାହାକୁ କରିବି ସାକ୍ଷୀ । ୩ । କହେ ନଚ୍ୟାନନ୍ଦ ଶୁଣ ଗୋ ନାରୀ, ପରକଥା ଶୁଣି ସ୍ୱାମୀ ତୁମ୍ଭର ।। ଖଚୁଆ ବଚନେ, ଦୃଢ଼ କର ମନ, ଭସାଉ ଅଛ ଦୋଷ ନ ପରଖି । ୪ ।

( ପାଲ ) ପତିକାଛେ ଦୁଇଜାଏ ନିରାଶ ହଇଲ । ବିଷାଦ ସାଗରେ ବୁଡ଼ ହଇୟା ଆକୁଲ । ସୁମନ୍ତ କୁମନ୍ତ କନ୍ୟା ମନେ ବିଚାରିଲ । ମଦନସୁନ୍ଦର ଆଗେ କହିତେ ଲାଗିଲ । ଦୁଇଜାଏ ବଲେ ତାରେ ଶୁନ ହେ ମଦନ । ଆମାଦେର କପାଲେ କି ଇହାଇ ଲେଖନ । ଆମାଦୁଇ କପାଲେ କି ଏହି ବିଡ଼ମ୍ବନ । ତବ ଅଗେ କହି ଶୁନ ପୂର୍ବ ବିବରନ । ଆମାହିକେ ଆନେ ସାଧୁ ଯେ ଦେଶ ମଦ୍ଧରେ । ଅଚ୍ୟେନ୍ତ ବାଲକ ଛିଲେ ଦେଖେଛି ତୁମାରେ । ଶିଶୁ କାଲେ ବାପମାଏ ତୁମାର ମରିଲେ । ଅନାଥ ହଇୟା ତୁମି ଗ୍ରିହେତେ ରହିଲେ । କତ ସତଖଣ୍ଡ ଅମି ତୋମାରେ ଖାବାଇ । କୁଙ୍କୁମ ଅଗୁରୁ ଚୁଆ କତ ଯେ ମାଖାଇ । ଅତବଡ଼ କରେଛି ହେ ମଦନସୁନ୍ଦର । କୋନଗୁନେ ଭସାଚବେ ଦରିଆ ଭିତର । ବିନା-ଦୋଷେ ସୌଦାଗର ଦବେ ଭସାଇୟା ।ଏ ବାର ରାଖ ମଦନ ତୁମାର କନ୍ୟା । ଏତ ଶୁନି ମଦନ ଯେ ବ୍ୟାକୁଲ ହଇଲ । କାନ୍ଦିୟା ଯେ ଦୁଇଜଇ ଆଗେତେ କହିଲ । ମଦନ ବଲେନ ଭାଇ ଶୁନ ନିବେଦନ । କକାରନେ ମାର ତୁମି କନ୍ୟା ଦୁଇଜନ ।. ପରାର୍ଣେ ନା ମାର ଯେ ଦଅ ଭସାଇୟାଁ । ଦାସୀ ବାନ୍ଧ ସଙ୍ଗେ ରାଖ ଟେକ୍କା ଭାତଦିଆଁ । ସାନନ୍ଦ ବିନୋଦ ବଲେ ଶୁନରେ ମଦନ । ତୋହାର ସମ୍ବନ୍ଧ ତାରେ ନା ରାଖି ଏଖନ । ଏତ ଶୁନି ମଦନ ଯେ ନିରାଶ ହଇଲ । ସୁମନ୍ତ କୁମନ୍ତ ହେଲ ପେଟାରି ଦାଟିଲ । ନିର୍ଦ୍ଦୟ ସାଧୁର ହ୍ରିଦେ ଦୟା ନା ବସିଲ । କହିଁସା ଦହ୍ୟା ମାଝେ

ଘସାଇସ୍ତ୍ରୀ ଦଲ । ଯଖନ ପେଟାରି ପଡ଼େ ଦରିଆ ଭିତରେ । ପ୍ରଦ୍ୟୁମ୍ନ ଘସେନ ଯେନ ଦ୍ୱାରକା ନଗରେ । ପେଟାରିର ମାଝେ ଥାକି କନ୍ୟା ଦୁଇଜନ । ଆକୁଲେ ଡାକିଲ ରାଖ ପ୍ରଭୁ ନାରାୟନ ।

ଡୁହା—ପ୍ରଭୁ ହେ ସତ୍ୟପୀର, ଏ ମୃତ୍ୟୁ ସଙ୍କଟେ କର ଉଦ୍ଧାର ।

ଚୌପଦୀ—କୃପାନିଧି କୃପାରେ ନୁହ କୃପଣ

ଅଥଳ ସମୁଦ୍ରେ ପଡ଼ି ଡାକୁଛି ଶୁଣ । ଘୋଷା ।

ଆକୁଳେ ମୁଁ ଜ୍ଞାନହୀନା ଅଭୟ ପାଦେ ତୁମ୍ଭରି

ରଖ ବା ନ ରଖ ମୁଁ ପଶିଲି ଶରଣ । ୧ ।

ଡାକିଲା ସେ ଗଜରାଜ ଉଦ୍ଧରିତେ ହୋଇଣ ସଜ

ଉଦ୍ଧାରିଲେ ତାହାକୁ ଗ୍ରାହ ନାଶିଣ । ୨ ।

ତୁମ୍ଭପରି ନାଥ ଥାଉଁ କାହାରେ କହିବି ଆଉ

ଚକ୍ରଧର ଚକ୍ରେ ଛେଦ ମୋର କଷଣ । ୩ ।

ନିତ୍ୟାନନ୍ଦ ସାହୁ ଘେନ ସେ ପାଦପଙ୍କଜେ ମନ

ରହିଥାଉ ଏହି ଭିକ୍ଷା ଦିଅ ଜାଣିଣ । ୪ ।

ଡୁହା—ନିଦାରୁଣ ଦଇବ, ଯାହା କଲା ତାହା କିଏ ସହିବ । ଆହା ବୋଲିବାକୁ, ସାହା କେହି ନାହିଁ କାହାଆଗେ କହିବୁଁ କିଏ ଶୁଣିବ ।

(ପାଲା) ଆସମାନେ ସତ୍ୟପୀର ସେ କଥା ଜାନିଲ । ଦ୍ରୌପଦୀ ଆତଙ୍କେ ଯେତେ ଶ୍ରୀକୃଷ୍ଣ ଶୁନିଲ । ଦୁଇଜାଏ ଦୟାକେଲ ପ୍ରଭୁ ସତ୍ୟପୀର । ପେଟାରି ପ୍ରବେଶ ହେଲ ଦରିଆ ଭିତର । ଯେରେ ସତ୍ୟନାରାୟନ ପ୍ରଭୁ ଦୟାକରେ । ହୁକୁମେ ପେଟାରି ଚଲେ କେ ମାରିତେ ପାରେ । ଅଙ୍ଗଦେଶ ବଙ୍ଗଦେଶ କଳିଙ୍ଗ ସହର । ବାରଣ୍ଟ ଛାଡ଼ିଯା ତବେ ଗେଲ ତରାତର । ହେଙ୍ଗୁଲାଟ ଛାଡ଼ି ଗେଲ କର୍ଣ୍ଣାଟ ଭୁବନ । କୋଶଳ ଛାଡ଼ିଆ ଗେଲ କନ୍ୟା ଦୁଇଜନ । ତୈଲଙ୍ଗ ଛାଡ଼ିଆ ଗେଲ ନୈରଙ୍ଗ ସହର । ପ୍ରବେଶ ହଇଲ ଗିଆ ରଙ୍ଗିମାଘାଟର ।

ରଙ୍ଗିମା ବୋଲଣ୍ଟା ଦେଶ ବଡ଼ ମାତବର । ସୁରସେନ ବୋଲି ସେ ଦେଶରେ ଦଣ୍ଡଧର । ତାର କୋଟାଳିଆ ଥିଲା ଘାଟେର ଉପରେ । ପେଟାରି ପଡ଼ିଲା ତାର ନୟନ ଗୋଚରେ । ତମ୍ବାର ପେଟାରି ଦୁଟା ଯଖନ ଦେଖିଲା । ସୁରସେନ ରାଜାଆଗେ ଯାହିର କଲେ । କୋଟାଳିଆ କହେ ଭୂମି ଶୁନ ଦଣ୍ଡଧାରୀ । ରଙ୍ଗିମା ଘାଟେ ଲେଗେଛେ ଦୁଇଟା ପେଟାରି । ଆସି ଭସି ଘାଟପରେ ହଇଲ ପ୍ରବେଶ । ଶୁନ ଆହେ ମହାରାଜା କହିନୁ ସନ୍ଦେଶ । ରାଜାବଲେ ଶୁନ ହେ ତମାମ ବରାଦରେ । ପେଟାରି ଦେଖିତେ ଚଲ ରଙ୍ଗିମା ଘାଟରେ । କଟାରୀ ଓ ପାନ ରାଜା ବାନ୍ଧ କମରେତେ । ସବାର ହଇଲ ରାଜା ଘୋଡ଼ାର ପୃଷ୍ଠେତେ । ସଙ୍ଗେତେ ସିପାହୀ ଚଲେ ହଜାରୁ ହଜାର । ଲସ୍କର ଆଗେତେ ଚଲେ କତ ଫଉକାର । ପାରିଷଦବର୍ଗ ସଙ୍ଗ ଘୋଡ଼ା ହାତିପରେ । ଗୃହିଦଗେ ବେଡ଼ିଗଲ ରଙ୍ଗିମା ଘାଟରେ । ଏଛିରୂପେ ଲସ୍କର ଯେ ସାଜିଲ ରାଜନ । ଅଯୋଧ୍ୟା ଦେଶେତେ ଯେନ ଶ୍ରୀରାମ ଲକ୍ଷନ । ସେହିକ୍ଷନ ମହାରାଜା ଘାଟେ ପ୍ରବେଶିଲ । ତମ୍ବାର ପେଟାରି ଦୁଟା ନୟନେ ଦେଖିଲ । ରାଜାବଲେ ଶୁନ ହେ ତମାମ ବରାଦରେ । ପେଟାରିର ହକକତ କହିବ ତୋମାରେ । ଜାନିଲାମ କୋନ ସାଧୁ ଦରିଆ ଭିତରେ । ଜାହାଜ ଲଇତେ ଥିଲ ବେପାରେ ଖାତରେ । କପାଲ ବପାକେ ତାର ଜାହାଜ ଡୁବିଲ । ଭସିଆ ପେଟାରି ଦୁଟା ଏଖାନେ ଲଗିଲ । ସକଲେ ବଲିଲ ଏହିକଥା ସତ୍ୟ ହବେ । ତାହା ଛଡ଼ା ଅନ୍ୟ କଥା କିଛୁ ନା ସମ୍ଭବେ । ଇହା ମଧ୍ୟେ ଯତଅଛେ ଅମୂଲ୍ୟରତନ । ଆମାର ହଇଲ ଧନ ସକଲ ଏଖନ । ଏତକହି ଦିଲ ଆଜ୍ଞା କୋଟାଲ ଉପରେ । ଖୋଲ ଦେଖି କତମାଲ ପେଟାରି ଭିତରେ । ରାଜା ହୁକୁମେ କୋଟାଲ ପେଟାରି ଖୋଲିଲ । ସୁମନ୍ତ କୁମନ୍ତ କନ୍ୟା ବାହାର ହଇଲ । ହେନ ଦେଖି କୋଟାଲିଆ କହିଲ ହଜୁରେ । ମାଲମତା କିଛୁ ନାହିଁ ପେଟାରି ଭିତରେ ।

କେବଳ ଦୁଇଟି କନ୍ୟା ଅପୂର୍ବ ସୁନ୍ଦରୀ । ରହିଅଛନ୍ତି ଦୁଇ ପେଟା-ରିରେ ବାସକରି । ରାଜା ବଲେ କୋଠାଲେର କହତୁ ଆମାରେ । କେମନ ସୁନ୍ଦରୀ କନ୍ୟା ପେଟାରି ଭିତର । କୋଠାଲ କହିଲେ ଶୁନ ଓହେ ଦଣ୍ଡଧାରୀ । ସୁରପୁର ତେଜିଲ କି ରମ୍ଭାଅପସରୀ । ତାହାଲେଓ ନାଗକନ୍ୟା ଏଇ ମର୍ତ୍ତ୍ୟପୁରେ । ସ୍ୱଇଚ୍ଛାଏ ଆସିଅଛେ ବରିତେ ତୁମାରେ । ତାହାରେ ପଦ୍ମିନୀ କନ୍ୟା ଦେବ ମନୋହାରୀ । ତାର ଯତ ରୂପ ଗୁନ କହିତେ ନା ପାରି । କନ୍ୟାର ରୂପ ତୁଲନା ହବ କୋନଖାନେ । ଦେଖିନି ମା ଦୁଇକନ୍ୟା ସାବଣୀ ସମାନେ । ଶୁନିଆ କହିଲ ରାଜା କୋଠାଲିଆ ପ୍ରତି । ଦୁଇକନ୍ୟା ଶୀଘ୍ର ଲୟା ଆସ ମୋର କତି । ଏତ ଶୁନି କୋଠାଲୟା ଶୀଘ୍ର ହୟା ଗେଲ । ସୁମନ୍ତ କୁମନ୍ତ କାଛେ ପ୍ରବେଶ ହଇଲ ।

ଉକ୍ତି—କନ୍ୟାତ ଚହଟ ଚମ୍ପା, କରେ ପୁରୁଷ ଧଇର୍ଯ୍ୟ କମ୍ପା ଲେ ।

( ରାଗ—ମୋହନୀ, ତାଳ—ଝୁଲା )

ଚୌପଦୀ—ସେ କୁନ୍ଦରଦନାଙ୍କୁ ଯାଇ ଡାକ ଯେନ ଆହେ ଅନ୍ତ ପାଟକୁ

ନୟନେ ଦେଖିବା ପାଉଥିଲେ ଶୋଭା
ବରଣହେବା ନେଇ କାଳ ରାତିକୁ । ପଦ ।

ଧନ୍ୟ ସେହି ନାରୀ ଗୁଣ ସ୍ୱର୍ଣ୍ଣପୁରୀ
ଆସିଛନ୍ତି ସେ ମୋତେ ବରିବାକୁ ।

ବାଳମ୍ବ ଆମ୍ଭର ଦେଖିଲେ ସେ ନାରୀ
ଭୁଲିଯିବେ ଅବା ଅନ୍ୟ ରାଜ୍ୟକୁ । ୧ ।

ସେହି ନବଯୁବା ଦେହିଣ ବୁଝିବା
ଅବା ଆସିଛନ୍ତି କେଉଁ କାର୍ଯ୍ୟକୁ ।

କିବା କେଉଁ ନର କଲ ହର ବର
ପେଟାରି ଭିତରେ ପୂରାଇ ତାଙ୍କୁ । ୨ ।

କହି ନୃପବର ହୋଇଲେ ଅଧୀର
କରମରେ ପାଇ ମନସ୍ତାପକୁ ।
ପେଷିଣ ଡଗରେ ବୋଲେ ଯାଅ ଖରେ
ପେଟାଶରେ ଛନ୍ତି ପାଇ ଦଳକୁ । ୩ ।
ରାଜା ଆଜ୍ଞା ପାଇ ନଗରରେ ଧାଇଁ
ଯାଇଁଣ ଡାକଲେ ନାଟୁଆଙ୍କୁ ।
ନିତ୍ୟାନନ୍ଦ ସାହୁ ବୋଲେ ପ୍ରୀତି କାହୁଁ
ପାଇବ ରଖିଲେ ପତିବ୍ରତାକୁ । ୪ ।

( ପାଲ ) କହିଲେକ ମୋର ସାଙ୍ଗେ ଆସ ନାଗୁଆଁ । ତୋମାକେ ମହାରାଜାର ହୁଏଛେ ଡାକସ ଗୋ ।

ଉତ୍ତା—ଆସ ରମଣୀମଣି, ମହାରାଜା ମନ ଲଭିଗଲଣି ଗୋ ।
ଚଉପଦୀ—ଆସ ରମଣୀମଣି, ମହିମା ଡକାଇ ଅଛନ୍ତି ପୁଣି । ପଦ ।
କେଉଁଦେଶ ଘର, କି ନାମ ତୁମ୍ଭର, ଅଟ କାହା ତରୁଣୀ ।
କିହିଁକି ଏ ଦଶା, ହେଲ ଲୋକହସା, ଦେଖିବାରୁ ଆମ୍ଭ ମନ ଗଲେଣି
ସୁକୃତ ତୁମ୍ଭର, ଥିବାରୁ ପୂର୍ବର, ବଞ୍ଚି ରହିଲ ପୁଣି ।
ପେଟାର ଭିତରେ, ପଶି ନିରନ୍ତରେ, ଅଇଲ କେଉଁଠୁଁ କହତ ପୁଣି ।
କେବଣ ଚରିତ, ଦେଖି ଆଚମ୍ବିତ, ହେଉଅଛୁ ମନ୍ତ୍ରିଣୀ ।
ନ ପାଇଲ ବ୍ୟଥା, ହେଲ ଏ ଅବସ୍ଥା, ଶରୀରେତ ମୁଖ ଶୁଖିଗଲଣି ।
କହି କଟାଅନ, ହୋଇଣ ବକନ, ନୃପ ପାଶେ ଡାକନେଲ ତକ୍ଷଣି
ନିତ୍ୟାନନ୍ଦ ଧନ, କହଇ ଗୋଧନ, ତୁମ୍ଭେ ପରହେବ ତାଙ୍କ ଘରଣୀ ।

(ପାଲ) ଦୁଇଜାଏ ଭେଟିଦିଲ ରାଜଦରବାରେ । ଛାମୁରେ ମିଳିଆ ବଲେ ଜୁହାର ଜୁହାରେ । ରାଜା ବଲେ ଆଗୋ କନ୍ୟା କହ ଯେ ତୁମାରେ । କୋନ ଦେଶୁ ଆଇଲ ଘର କୋନ ଯେ ଗ୍ରାମରେ । ରାଜା ନାମ ପ୍ରଜା କହ ଗୋ ଆମାରେ । ତୋମାର କି ନାମ ପତି. ନାମ କିସ ଧରେ । କି ହେତୁ ପେଟାରତେ ଅଇଲେ ଦୁଇଜନ ।

କହ ଭୁମି ଦୁଇକନ୍ୟା ମନେର କଥନ । କନ୍ୟାବଲେ ମହାରାଜା ଶୁନ ନିବେଦନ । ଭାଗୀରଥୀ ତୀରେ ଅାଛେ କାଞ୍ଚନ ପାଟନ । ସେ ଦେଶ ନୃପତି ନାମ ରାଜା ରତ୍ନାକର । ସାନନ୍ଦ ବିନୋଦ ସେହି ଦେଶ ସୌଦାଗର । ସୁମନ୍ତ କୁମନ୍ତ ମୋର ତାଦେର ଯୁବଣ୍ଠ । ମୋରା ଦୁଇଜନା ହୈନୁ ପତିରେ ଅର୍ପିତ । ପତିର ନିକଟେ କିଛୁ ଅପରାଧ ହୈଲ । ସେହିଦୋଷେ ଅାମାଦିଗେ ଭସାଇୟାଦିଲ । ରାଜନ ବଲେନ କନ୍ୟା ଶୁନଗୋ ବଚନ । ଅାଜହୈତେ ମୋର ନାରୀ ହଓ ଦୁଇଜନ । କନ୍ୟା ବଲେ ଶୁନ ଭୁମି ଦଣ୍ଡେର ରାଜନ । ବାଲ୍ୟହୈତେ ପତିବ୍ରତା ମୋର ଦୁଇଜନ । ଆମାଦେର ପତିବ୍ରତା ଭୁମି ଯେ ରାଖିବେ । ତାରପରେ ଦୁଇଜାଏ ତୋମାର ହଇବେ । ରାଜା ବଲେ କନ୍ୟା ଅାଗୋ ଶୁନ ନିବେଦନ । ପତିବ୍ରତା ସମାଚାର କହ ଗୋ କେମନ । କନ୍ୟା ବଲେ କହି ତବେ ଶୁନ ଦଣ୍ଡଧର । ପୁରୁଷ ସେବା ନା ହବେ ବାର ଯେ ବତ୍ସର । ଉଚ୍ଛିଷ୍ଟ ପାଲଟା ବସ୍ତ୍ର ନା ଛୁଇଁବ କାର । ରତ୍ତକନ୍ୟା ଛିଲ ଯେନ ସମ୍ବରରେ ପୁର । ଇହା ଶୁନି ରାଜା ବଲେ ଶୁନ କନ୍ୟାଗନ । ଅନ୍ଦର ମହଲେ ଚଲ ତୋଷେ ଦୁଇଜନ । କନ୍ୟା ବଲେ ମୋରା ଯଦି ଅନ୍ଦରେତେ ଯାବ । ପତିବ୍ରତା ଧର୍ମ ତବେ ରାଖିତେ ନାରିବ । ଅାମାରେ ରାଖିତେ ଇଚ୍ଛା ଯଦି ଦଣ୍ଡଧର । ମହଲ ତୁଲିଆ ଦିଅ ରଙ୍ଗିମା ଘାଟେର । ଏତଶୁନି ମହାରାଜା ଖୋସାଲ ହଇଲ । କୋଟାଲ ଡାକିୟା ରାଜା କହିତେ ଲାଗିଲ । ରାଜାବଲେ କୋଟାଲ ରେ ଶୁନ ମୋ ବଚନ । କାରିଗର ଅାନ ତୋଲ ମହଲ ବହନ । ଏତଶୁନି କୋଟାଲିୟା ଉଦବେଗେ ଗେଲ । କାରିଗର ଡାକିୟା ମହଲ ତୋଲାଇଲ । ବଚନ ନୂତନ ଘର ସୁବର୍ଣ୍ଣ ପାଚରା । କେ ବର୍ଣ୍ଣିତ ପାରେ ତାର ଦପନେର ଝରା । ମହଲ ସମାପ୍ତ କରି କୋଟାଲ ଚଲିଲ । ରାଜାର ହଜୁରେ ଗିୟା କହିତେ ଲାଗିଲ ।

ମହାରାଜା ଶ୍ରୀ ହଜୁରରେ କର ନିବେଦନ । ରଙ୍ଗିମ ଘାଟ ମହଲ ହଲ ସମାପନ । ଦୁଇ କନ୍ୟାରେ ଡାକୟା କହିଲେ ରାଜନ । ଘାଟରେ ମହଲେ ଯାଅ ତୋର ଦୁଇଜନ । କନ୍ୟାବଲେ ମୋର କେନ ଘାଟେ ପ୍ରବେଶିବ । ବେରୋଜଗାର ହଇଆ କେମନେ ରହିବ । ରାଜା ବଲେ କନ୍ୟା ଆଗେ ଶୁନ କଥା ମୋର । ଘାଟେତେ କରବ ତୋରା କେନ ରୋଜଗାର । ସୁମନ୍ତ କୁମନ୍ତ ବଲେ ଶୁନ ହେ ରାଜନ । ଘାଟେତେ ଦାରୋଗା ହବ ମୋରା ଦୁଇ-ଜନ । ରାଜା ବଲେ ଏହି କଥା ବଡ ବିଡ଼ମ୍ବନ । ଘାଟେତେ ଦାରୋଗା ହବେ କନ୍ୟା ଦୁଇଜନ । କନ୍ୟା ବଲେ ମୋରା ଯଦି ଦାରୋଗା ହଇବ । ତିନଲକ୍ଷ ଟାକା ଆନି ହଜୁରେତେ ଦିବ । ଏହା ଶୁନି ମହାରାଜା ଖୋଷାଲ ହଇଲ । ଆପନାରକରେ ଶାଡ଼ୀ ଶିରୋପା ବାନ୍ଧିଲ । ସାନନ୍ଦ ଶିରୋପା ଯଦି ପେଲ ଦୁଇଯାଏ । ଘାଟେତେ ଦାରୋଗାହବ କୋନ ଅଭିପ୍ରାୟେ । ଆମି ରାଜା ଆମି ପ୍ରଜାଘାଟେର ଉପର । ଦୋଷ ଦେଖି ଦଣ୍ଡଦିବ ସବ ସୌଦାଗର । ଆମାର ନାମେତେ ଯେହୁ ଚୁଗୁଲି କହିବେ । ତାର କଥା ରାଜା ତୁମି କର୍ଣ୍ଣେ ନା ଶୁନିବେ । ଆମି ଯଦି ସେ ଘାଟେତେ ଦାରୋଗାହଇବ । ତୁମାର ଦୁହାଇ ସେ ଘାଟେତେ ନ ଫେରାବ । ଏତ ଶୁନି ମହାରାଜା ଆନନ୍ଦ ହଇଲ । କଲମ ଉଠାଇ ତବେ କାଗଜେ ଲେଖିଲ । ସାନନ୍ଦ ଶିରୋପା ଯଦି ପେଲ ଦୁଇଯାଏ । ଦଣ୍ଡଛନ୍ଦ ଲୟା କନ୍ୟା ଶିର ତ ଉଡ଼ାଏ । ଶତ ଶତ କୋଟାଲୟା ଧାଏଁ ଆଗେ ପଛେ । ଦାସୀବାସୀ ସକଲ ମିଲିଲ ଆସି କାଛେ । ଦୁଇଜାଏ ଚଲେ ଶିରେ ଦଣ୍ଡଛନ୍ଦ ଯେନ । ଯେନ ବୃନ୍ଦାବନେ ଯାଏ ରାଈ ଠାକୁରାଣି । ଦୁଇଜାଏ ଘାଟପରେ ଗିୟା ପ୍ରବେଶିଲ । ଆସମାନେ ଦେଖି ପ୍ରଭୁ ଖୋଷାଲ ହଇଲ । ଦୁଇଜାଏ ଦୟାକେଲ ପ୍ରଭୁ ସତ୍ୟପୀରେ । ନିତ ଯତ ଡାଙ୍ଗା ଯାଏ ଘାଟେର ଉପରେ । ସତ୍ୟପୀର ଦସ୍ତଗିର ଦୟା

କେଲ । ତିନିଲକ୍ଷ ଟଙ୍କା ହେଲ ଘାଟେଠି ହାସିଲ । ଲକ୍ଷଟଙ୍କା ପ୍ରତିଦିନ ରାଜାପାଶେ ଦିଯ୍ୟା । ଦୁଇଜାଏ ରହେ ତବେ ହରଷିତ ହୟ୍ୟା । ତିନିଲକ୍ଷ ଟଙ୍କା ବୁଝି ନିଲେନ ରାଜନ । ଏସିବା ଖରଚ କରେ କନ୍ୟା ଦୁଇଜନ । ଦିନୁ ଦିନ ଗୁଜୁରିତେ ମାସକ ହଇଲ । ମାସେ ମାସେ ଗୁଜୁରିଆ ଦୁଇମାସ ଗେଲ । ଦୁଇମାସ ଦାରୋଗା ହଇଲ ଦୁଇଯାଏ । ଗାଏ ଦ୍ୱିଜ କବିକର୍ଣ୍ଣ ରାଖିବେ ଖୋଦାଏ ।

ହରି ହରି ବଲ ହେ ସକଲ ବନ୍ଧୁଗନ । ସଙ୍କଟୁ ରାଖିବେ ପ୍ରଭୁ ସତ୍ୟନାରାୟନ । ଶୁନ ସବେ ବିବାଦରେ କୌତୁକ କଥନ । ଘାଟେତେ ଦାରୋଗା ହଲ କନ୍ୟା ଦୁଇଜନ । ସାଧବ ଯେଦିନୁ କନ୍ୟା ଭସାଇଯ୍ୟା ଦିଲ । ବେରୋଜଗାରେତେ ସାଧୁ ମନ୍ଦିରେ ଥାକିଲ । କତଦିନେ ସାନନ୍ଦ ବିନୋଦ ସୌଦାଗର । କାଛେତେ ବସାଏ ଶ୍ରେଷ୍ଠ ମଦନସୁନ୍ଦର । ସାନନ୍ଦ ବିନୋଦ ବଲେ ଶୁନରେ ମଦନ । ବାନିଜ୍ୟ ଆମାର କୃଷ ହଏ ନିରୂପନ । ଏ ଗ୍ରହ ଜଞ୍ଜାଲ ସବ ମିଟିଲ ତୋମାରେ । ମୋର ଦୁଇଭାଇ ଯାବ ବେପାର ଖାତିରେ । ମଦନ ବଲେ ରେ ଭାଇ ଶୁନ ମୋ ବଚନ । ପତ୍ନୀଭ୍ରଷ୍ଟ ବିଦେଶେତେ ଯାବ କି କାରନ । ସୁମନ୍ତ କୁମନ୍ତ ପୂର୍ବେ ଘରେ ରାଖିଗେଲେ । ଛମାସ କହିଯ୍ୟା ବାରବର୍ଷରେ ଆସିଲେ । ଏବେ ଯଦି ପତ୍ନୀ ଭ୍ରଷ୍ଟେ ବିଦେଶେତେ ଯାବେ । ଆର କୋନ ଗୁନେ ଭୂମି ଫେରିଯ୍ୟା ଆସିବେ । ବିଭାହୟ୍ୟା ଦୁଟି କନ୍ୟା ରାଖ ନିଜଘରେ । ତାରପରେ ଦୁଭାଇ ଯାଇବେ ବେପାରେ । ସାନନ୍ଦ ବିନୋଦ ହସି ମଦନେ କହିଲ । ଯେଦ୍ଦିନ ଦୁଇଯାଏ ଭସାଇନୁ ଜଲ । ସେ ଦିନ ଆଜ୍ଞା ଦିଆଛେ ମୋରେ ଦଣ୍ଡଧାରୀ । ବିଭା କରାଇବେ ଦୁଟି ରାଜାର କୁମାରୀ । ବିଭାର ଖାତିରେ ଯତ ସାମଗ୍ରୀ ଲଗିବେ । ତତ ଟଙ୍କା ଭଣ୍ଡାରରୁ ରାଜା ଗନିଦିବେ । ଆମି ଆଗେ ବେପାରେତେ ଗମନ କରିବ । ତାରପରେ ପରେର କୁମାରୀ ବିଭା ହବ ।

ମଦନସୁନ୍ଦର ବଲେ ଶୁନ ମହାଜନ । ଆମାର କି କମି ଆଛେ
ମାଲମତା ଧନ । ଟାକାର ମରାଇ କେତ ଦରୋଜା ଉପରେ ।
ସୁବର୍ଣ୍ଣ ଭଣ୍ଡାର ଆଛେ ମହଲ ଭିତରେ । କି କାରଣେ
ବିଦେଶେତେ କରିବେ ଗମନ । ମନ୍ଦରେ ବସିୟା ଥାକ ଭାଇ
ଦୁଇଜନ । ସାନନ୍ଦ ବିନୋଦ ବଲେ ବାତ୍ କହୁଁ ତୋରେ ।
ବିଷାଦ ହଇଛ ଭାଇ କିସେର ଖାତିରେ । କି ଘରର ସମ୍ପଦ ଆଛେ
ଘରେର ଭିତରେ । ତାଇତେ ଆସିଆ ରବେ ବିନା ରୋଜଗାରେ ।
କୁବେର ସମାନ ଯାର ମାଲମତା ଥାକେ । ବସିଆ ଖାଇଲେ
ସେହୁ ଫୁରାଏ ପଲକେ । ତୋମାର ନିତାନ୍ତ ଯଦି ଯାବେ
ବିଦେଶେତେ । ଆମିଓ ଖାଇବା ତୋମା ଦୁଇଭାଇ ସାଥେ ।
ସାନନ୍ଦ ବିନୋଦ ବଲେ ଶୁନରେ ମଦନ । ଏହି ଉପଦେଶ
ତୋର ମାଲ କୋନ ଜନ । ଦୁଇଭାଇ ମଦନକେ ବୁଝାଇ
କହିଲ । ଘରେ ଥାକ ପ୍ରାନଧନ ନା କର କଟାଲ । ପାଗଲ ହଇ
ମଦନ ମୋରେ ପ୍ରତି ଆଶେ । ଆମି ମଲେ ଯାବେ ତୁମି ଦୂର
ପରବାସେ । ମଦନ ବଲେରେ ଭାଇ ସତ୍ୟ କହ ମୋରେ ।
କତଦିନେ ଫେରିଆ ଆସିବେ ତୁମି ଘରେ । ସାନନ୍ଦ ବିନୋଦ
କହେ ମଦନେର ପାଶେ । ନିଶ୍ଚୟ ଆସିବ ମୋରା ଫେର ଦୁଇ
ମାସେ । ମଦନ ବଲେ ଦୁମାସେ ଯଦି ନା ଆସିବେ । ହୁତାଶନ
ଜାଲ ନିଶ୍ଚେ ଝାସଦିବ ତବେ । ଏତ ଶୁନି ଦୁଇଭାଇ ଉଲ୍ଲାସ
ହଇଲ । ସାତଟି ଜାହାଜେ ମାଲମତା ଭରିନିଲ । ସୁବର୍ଣ୍ଣେର
କେଲୁଆର ନିଲ ନିଜ କରେ । ହରିଧ୍ୱନି କରିୟା ଖେଞ୍ଚିଲ
ଲହଙ୍ଗରେ । ସାନନ୍ଦ ବିନୋଦ ଚଲେ ଜାହାଜ ଉପରେ ।
ଆସମାନେ ଦେଖି ହାସେ ପ୍ରଭୁ ସତ୍ୟପୀରେ । ଦରିଆତେ
ଜାହାଜ ଚଲିଏ ମହାଜନ । ଘଡ଼ିକେ ବହିଲେ ଡଙ୍ଗା ଚୌଷଠି
ଯୋଜନ । ଅଙ୍ଗ ବଙ୍ଗ ଛାଡ଼ି ଗେଲେ ଭୌରଙ୍ଗ ସହର । ବସନ୍ତ

ଜନ୍ମସ୍ଥା ଗୋଲ୍ ମଗଧ ଦେଶର । କୋଶଲ ଜନସ୍ଥା ଗେଲ ହେଙ୍ଗ ଜ
ସହର । ସୌରଙ୍ଗ ଜନସ୍ଥା ଗେଲ ଭେରଙ୍ଗ ସହରେ । ସେହି
ଦେଖୁ ଦୁଇଭାଇ ଚଳିଲ ସଙ୍ଗରେ । ପ୍ରବେଶ ହଇଲ ଗିୟା ରଙ୍ଗିମା
ଘାଟରେ । ରଙ୍ଗିମା ଘାଟେ ପ୍ରବେଶ ହୁଇ ସୌଦାଗର ।
କମାନ ଖଲାସ କର ବଲେ ଝୋପଦାର । ଦାଉଁ ଦାଉଁ କମାନ
ପଡ଼ିଲ ଘାର ଡାକେ । ଏକାବାରେ କମାନ ଖଲସ ଶତାଧିକେ ।
ଯଖନ ସାଧବେର କମାନ ଖଲସିଲ । ସୁମନ୍ତ କୁମନ୍ତ ଶୁନ ଚମକ
ପଡ଼ିଲ । କହୁଥିଲ ଡାକ କନ୍ୟା କହିଲ ବଚନ । ଘାଟେତେ
ଆଇଲ ଦେଖ କୋନ ମହାଜନ । ଦାରୋଗା ହୁକୁମ ପାଇ ଚଳିଲ
କୋଟାଲ । କହେ ଶୋଣ୍ଡା ନଅ ଚଲେ ହାଡ଼େ ଦରବାର ।
ଦଣ୍ଡଆକନାରେ ତବେ କୋଟାଲ ମିଲିୟା । ସୌଦାଗର କହେ
କଥା ତର୍ଜନ କରିୟା । କୋଟାଲ କହିଲ ସାଧୁ କହି ହେ ତୁମାରେ ।
ଦାରୋଗା ହୁକୁମେ ଚଲ ଦରବାର ପରେ । ସାନନ୍ଦ ବିନୋଦ ସାଧୁ
କହେ କୋଟାଲରେ । ଗଲି ପୁଛ ନଇ ଆମି ବଡ଼େ ସୌଦାଗରେ ।
ଆଗେ ଆମି ନୃପତିରେ ମୁଲକାତ ହବ । ତାରପରେ
ଦାରୋଗା ଆସିଲେ ବୁଝାଇବ । ବଲେନ ଆହେ ଓହେ
ସୌଦାଗର ଭାଇ । ଏ ଘାଟେତେ ନାହିଁ ଫିରେ ରାଜାର ଦୁହାଇ ।
ଯେହି ରାଜା ସେହି ଭୂମି ଘାଟେ ଉପର । ଦଣ୍ଡଛତ୍ର
ପାଟ ଆଛେ ଦାରୋଗାର ଶିର । ସାନନ୍ଦ ବିନୋଦ କହେ
କୋଟାଲେ ତଖନ । ମାଡବର ଦାରୋଗାଏ ରଙ୍ଗିମା ପାଟନ ।
ଯବରଦସ୍ତି ଦାରୋଗା ଏ ଏହି ମୁଲକରେ । ଚଲ ମୁଲକାତ ହବ
ଦାରୋଗା ହଜୁରେ । ଏତ କହି ଦୁଇଭାଇ ବାହାର ହଇଲ ।
କତ ଭେଟିଦ୍ରବ୍ୟ ତାର ସଙ୍ଗତେ ନଇଲ । ଅଗରୁ ଚନ୍ଦନ
ନଇ ଭର ଭର କରି । କତ ଥାଲ ନଇ ମୃଗନାଭିର କସ୍ତୁରୀ ।
ଯାଇଫୀ ଯାଇଫଲ ନଇ ଲବଙ୍ଗ ଏଲାଚି । ଆତର ଗୋଲାପ ନଇ

ମିଶ୍ରି ଆଉ ସବ । ସାଧବ ନିଲ କର୍ପୂର ଭରି କତ ଥାଲେ । ନଫର ଚାକର ସବ ସଙ୍ଗେ ନିଆ ଚଲେ । ଏନିକ ଭେଟି ଲେଇଁଯା ଚଲେ ଖସି ହୋଇ । କୋଟାଲିଆ ପଛେ ପଛେ ଚଲେ ଦୁଇ-ଭାଇ । ସୁମନ୍ତ କୁମନ୍ତ କନ୍ୟା ମହଲେତେ ଥିଲ । କୋଟାଲିଆ ପଛେ କାର ନଜର ପଡ଼ିଲ । ସୁମନ୍ତ ବଲେ କୁମନ୍ତ ଶୁନ ମୋ ବଚନ । କୋଟାଲେର ପିଛେ ଏହୁ କୋନ ମହାଜନ । ସୁମନ୍ତ କଥା ଶୁନ କହିଲ କୁମନ୍ତ । କୋଟାଲେର ପିଛେ ଆଛେ ତୋର ମୋର ପତି । ତୋରେ ମୋରେ ଭସାଇଲ ଦରିଆ ଭିତରେ । ଏବେ ଆସେ ଦୁଇଭାଇ ବେପାର ଖାତିରେ । କତ ଦୁଃଖ ଦିଲ ଏହୁ ଦୁଇ ସହୋଦରେ । ମଥା କାଟି କର ନିଯୁ ନଗ୍ରେର ବାହାରେ । ସୁମନ୍ତ ବଲେ କୁମନ୍ତ ଶୁନ ନିବେଦନ । ଶମଶାନେ ମଥା କାଟ ଭାଇ ଦୁଇଜନ । ଏକଚିତ୍ତେ ଦୁଇଯାଏ ଭାବେ ମନେ ମନେ । ପୁରୁଷେର ହତ୍ୟାଦୋଷ କରିବ କେମନେ । ପ୍ରାଣପତି ହଇଯା ସେ ମୋରେ ନା ମାରିଲ । ପେଟାର ଦେଖିଲ କରି ମୃଗାଇଯା ଦିଲ । ପୂର୍ବଜନ୍ମେ ମୋଦେର କି ଅପରାଧ ଥିଲ । ଏ ଜନ୍ମେ ପତିର ପଦ ସେବା ନା ମିଲିଲ । ଏବେ ସେ ପୁରୁଷ ହତ୍ୟା କେମନେ କରିବ । ଆଉ କୋନକାଲେ ଆମି ଉଦ୍ଧାର ନହିବ । ଦୁଇଭାଇ ବନ୍ଦିଦିଆ ରାଖ ବନ୍ଦଘର । ତବେ ସିନା ଆରମାନ ଯାଇବେ ଆମାର । ସୁମନ୍ତ କୁମନ୍ତ ଦୁଇ ବିଚାରେ ମନରେ । ଏହିକାଲେ ପ୍ରବେଶିଲ ଦୁଇ ସୌଦାଗରେ । ସୁମନ୍ତ କୁମନ୍ତ ନିଜ ପତିକେ ଚିହ୍ନିଲ । ସାନନ୍ଦ ବିନୋଦ କନ୍ୟା ଚିହ୍ନି ନ ପାରିଲ । ଭେଟିଦ୍ରବ୍ୟ ରଖିଦିଲ ବିଛୁନା ଉପରେ । ସାନନ୍ଦ ବିନୋଦ ବଲି ଜୁହାରେ ଜୁହାରେ । ଯଖନ ସେ ଦୁଇଭାଇ ଜୁହାର ହଇଲ । ରତ୍ନେମ୍ପ କନ୍ୟାର ମନେ ଦୟା ନା ଆସିଲ । କୋଟାଲ ଡକାଇ କନ୍ୟା ବଲେନ ନିରାଟ । ନଗର ବାହାରେ ଦୁଇଭାଇ ମାଥା କାଟ । କତବାର ଯାଏ ଆସେ

ବେପାର ଖାତରେ । ଏକବାର ହାସିଲ ଏ ନାହିଁ ହେଲ ମୋରେ । ବଡ଼ ଦଗାବାଜ ଏହି ଦୁଇ ସୌଦାଗର । କାରାଗାରେ ବେଢ଼ି ଦଣ୍ଡା ରାଖ ଅତଃପର । ବାରବର୍ଷର ହାସିଲ ଅସୁଲ କରିବ । ତାର ପରେ ଦୁଇଭାଇ ବେଢ଼ି କାଟାଇବ । ଏତ ଶୁନି କୋଟାଳଆ ଉଠେ ଉତଃପର । ମୁସକ ଛଡ଼ାଇ ବାନ୍ଧେ ଦୁଇ ସୌଦାଗର । ସାତ-ଗୋଟା ଜାହାଜେତେ ଯେତ ଦ୍ରବ୍ୟ ଥିଲ । ଦାରୋଗା ଭଣ୍ଡାରେ ନେଇ ଦାଖିଲ କରିଲ । ଦୁଇଭାଇ ପାଏ ହେଲ ଭୁଜବନ୍ଧ ବେଢ଼ି । ଗଳାତେ ଝଡ଼କା ହେଲ ହାତେ ହେଲ କଡ଼ି । ବନ୍ଧନେତେ ଦୁଇଭାଇ ରହିଲ ପଡ଼ିଆ । ବାଇଶମନ ପାଥର ଗୁଣ୍ଡତେ ଲଦିୟା । ସାନନ୍ଦ ବଲେ ବିନୋଦ ଏ କପାଲ ଲେଖା । ଆର ଭାଇ ବନ୍ଧୁ ସଙ୍ଗେ ନାହିଁ ହବେ ଦେଖା । ଇତିପୂର୍ବେ ନରପତି ପେଷିଲା ବେଶାରେ । ବନ୍ଧନେ ଠେକନୁ ଗିୟା ଚନ୍ଦନନଗରେ । ଏକେ ବିନାଦୋଷେ ମେଟା ପଡ଼ିଲୁ ବନ୍ଧନେ । ନିଶ୍ଚୟ ମରିବ ଆର ନ ବାଞ୍ଚିବ ପ୍ରାନେ । ହିନୁ ହିନୁ ଗୁଜୁରିଆ ମାସକେ ହଇଲ । ମାସେ ମାସେ ଗୁଜୁରିଆ ଛୟମାସ ଗେଲ । ଏହିରୂପେ ଦୁଇ ସାଧୁ ରହିଲ ବନ୍ଧନେ । ଗାଏ ଦ୍ୱିଜ କବିକର୍ଣ୍ଣ ପୀରେର ଚରନେ ।

ଡୁହା—ପୋଡ଼ୁ ପୋଡ଼ା କରମ, ବିଦେଶରେ ହୋଇଲୁ ବନ୍ଧନ ହେ ।
( ଆଶା ଭାଙ୍ଗିଲୁରେ ନିଦାରୁଣ ବିହି କି କଲୁ—
ବୃତ୍ତରେ ଗାଇବ )

ଚୌପଦୀ—ବିହି କି କଲୁ ରେ, ବିନା ଦୋଷେ ଦଣ୍ଡ ବିହିଲୁ ।
ଜୀବନ ନ ନେଇ କମ୍ପା ବ୍ୟାକୁଳ କଲୁରେ । ଘୋଷା ।
ବିଦେଶେ ଅଣାଇ ଖରେ ପକାଇଲୁ ବନ୍ଧନରେ
ଦୟା ନ ବହିଲୁ ଥରେ ନିର୍ଦ୍ଦୟ ହେଲୁ । ୧ ।
ମଦନ ନିଷେଧ ଥରେ ନ ଶୁଣି କର୍ଣ୍ଣ ପଥରେ
ମନ ନିର୍ବେଶି ବେପାରେ ଆସିଣ ମଲୁଁ । ୨ ।

ଏବେ ଅବୁଝା ନଗରେ ପଡ଼ିଲୁ କର୍ମ ଦୋଷରେ
ଆଉ ଜନ୍ମଭୂମି ଥରେ ଯା ନ ଦେଖିଲୁଁ । ୩ ।
ନିତ୍ୟାନନ୍ଦ ବୋଲେ ଗିରେ ଅଦୋଷେ ନିଜ ଜାୟାରେ
ଘସାଇବାର ଯାଗରେ ଫଳ ପାଇଲୁଁ । ୪ ।

---

ରାମ ରାମ ପ୍ରଭୁ ରାମ ରାଜୀବଲୋଚନ । ରାମ ନା ଭଜି ମରିଲ ଲଙ୍କାର ରାବନ । ରାମ କଳ୍ପଦ୍ରୁମ ତଳେ ଯେ ଥାକେ ବସିୟା । କି କରିତେ ପାରେ ଯମ ଆପନି ଆସିୟା । ସାନନ୍ଦ ବିନୋଦ ରହେ ବନ୍ଧ କାରାଗାରେ । ମଦନସୁନ୍ଦର ଥାକେ ଆପନାର ଘରେ । ସେହି-ଦିନ ଦୁଇଭାଇ ବିଦେଶେତେ ଗେଲ । ଦୁଇମାସ ମଦନକେ କଣ୍ଠ ଦିୟାଛିଲ । ଛୟମାସ ଦୁଇଭାଇ ରହିଲ ବନ୍ଧନେ । ଭାଇ କଥା ମଦନେର ସଦା ପଡ଼େ ମନେ । ମଦନ କହେ ଦୁଭାଇ ବିଦେଶେତେ ଗେଲ । ବେଁଚେଅଛେ କି ମରେଛେ ଖବର ନାହିଁ ଏଲ । ଏହି ଚିନ୍ତା ମଦନ ଭୋଜନ ନାହିଁ କରେ । ଗୁମାନ ହଇୟା ବସେ ପଲଙ୍କ ଉପରେ । କାନ୍ଦିତେ ଲାଗିଲ ଅତି ବିକଳ ହଇୟା । କୋଥା ଗେଲେ ପ୍ରିୟଭାଇ ଆମାରେ ଛାଡ଼ିଆ । ଭାଇର ଭାବନା କରି ମଦନସୁନ୍ଦର । ନା ଖାଇ ଶୁଇଲ ବାଙ୍ଗ୍ଲା ପଲଙ୍କ ଉପର । ଏହି କାଲେ ରାତ୍ରଅର୍ଦ୍ଧେ ପ୍ରଭୁ ନାରାୟନ । ଶୟନେ ସ୍ୱପନେ କହେ ଶୁନରେ ମଦନ । ତୋର ଦୁଇଭାଇ ବନ୍ଧ ଆଛେ କାରାଗାରେ । ଦୁଇକନ୍ୟା ବନ୍ଧକୈଲ ରଙ୍ଗିମା ଘାଟରେ । ଦୁଇଭାଇ ପାଏଦ ଆଛେ ଭୁଜବଲ ବେଡ଼ି । ଗଲାତେ ତଉକା ଆଛେ ହାତେ ହାତେକଡ଼ି । ବାଇଶ ମନ ପାଥର ଛାତିର ଉପର । ନିଗୂଢ଼ ବନ୍ଧନେ ପଡ଼େ ଦୁଇ ସହୋଦର । ତୁମ୍ଭି ଯଦି ମଦନରେ ସେଥାକାନେ ଯାବ । ତବେ ତୋର ଦୁଇଭାଇ ଉଦ୍ଧରି ଆନିବ । ଏତ କହି ମହାପ୍ରଭୁ ଅନ୍ତର୍ଦ୍ଧାନ ଗେଲ । ଶୋୟାଛିଲ ମଦନେର ଚମକି ପଡ଼ିଲ । ଆରେ ଭାଇ ବଲି

କାନ୍ଦେ ଅତି ଉଚ୍ଚସ୍ୱରେ । କ୍ରୋଧ ହୋଇ ମଦନ ପଡ଼େ ଭୂମିପରେ ପ୍ରତାପ ଧରିଯାଇ ତାର କୁନ୍ତଳା କାମିନୀ । ପ୍ରାନପତିରେ ସଚେତ କରିଲ ତଖନ । ପତିପାଶେ କୁନ୍ତଳ ଯେ କରେ ନିବେଦନ । ବଲ ମୋର ପ୍ରାନପତି ଦେଖିଲ କି ସ୍ୱପ୍ନ । ମଦନ ବଲେ କୁନ୍ତଳା କହି ଗୋ ତୁମାରେ । ଦୁଇଭାଇ ବନ୍ଧ ଆଛେ ରଙ୍ଗିନୀ ଘାଟରେ । ଦୁଇକନ୍ୟା ବନ୍ଧକରେ ଦୁଇ ସହୋଦରେ । ପାଦେ ଭୂଜବଲ ବେଡ଼ିଦିଆ ଅତଃପରେ । ଚଲିତେ ତଉକା ଗ୍ଳୁତି ଉପରେ ପାଥର । ନିଗୂଢ଼ ବନ୍ଧନେ ଆଛେ ଦୁଇ ସହୋଦର । ଥାକଗୋ କୁନ୍ତଲ ତୁମି ଆପନାର ଘରେ । ଭାଇର ତଲ୍‌ଲାସେ ଆମି ଯାଇବ ସତ୍ତ୍ୱରେ । ଖୁଜି ଦୁଇଭାଇ ଆମି ଘରେତ ଆନିବ । ତା ନଇଲେ ସେଇ ଦେଶେ ପରାନ ହାରିବ । ଏତ ଶୁନି କୁନ୍ତଲର ପରାନ ଉଡ଼ିଲ । ଆକାଶ ଭାଙ୍ଗିଆ ଯେନ ମାଥାତେ ପଡ଼ିଲ । କୁନ୍ତଲ ବଲେ ବିଦେଶେ ଯାନିବ ଗୁନମନ । କେମନେ ଥାକିବ ଏକା ଆମି ଅଭାଗିନୀ । ମୋରେ ଗ୍ଳଡ଼ି ପ୍ରାନନାଥ ଯାଇବେ ବିଦେଶେ । ଏ ଅଭାଗୀ କେମନେତେ ଥାକିବେ ଆବାସେ । ଯୁବାକାଲେ ପତି ଯାର ବିଦେଶେତେ ଯାଏ । ସେହି ନାରୀ ଅଭାଗିନୀ ଜଗତେ ବୋଲାଏ । ମାଲତୀ କୁସୁମ ବନେ ଝଡ଼େ ଯେନ ବୃଥା । ଏ ନବ ଯୌବନ ତୋମା ଲଗି ହବେ ତଥା । ତୁମି ଯଦି ପ୍ରାନନାଥ ଯାବେ ବିଦେଶେତେ । ଆମିଓ ଯାଇବ ନିଶ୍ଚେ ତୋମାର ସଙ୍ଗତେ ।

ଉହା—ମୁହିଁ ଅଟେ ନାରୀହୀନ, ମୋତେ ସଙ୍ଗେ ନିଅ ନାଥ ବହନ ।

ଚୌପଦୀ—ପ୍ରାଣଈଶ୍ୱର ହେ ମୁଁ ତ କୁଳ ଭୁଆସୁଣୀ

ନୟନରୁ ନୀର ବହେ ଝରଝର ପରବାସ ଯିବା ଶୁଣି । ଘୋଷା ।

ଗ୍ରୀଷମରେ ଧନ କର୍ପୂର ଚନ୍ଦନ, ଯୋଗାଇବ କାରେ ଆଣି ।

ଗୋଳି ଅତି ରଙ୍ଗେ, ବୋଳି କାହା ଅଙ୍ଗେ, ଢାଳିବ ଫୁଲ-ବାଞ୍ଛଣୀ । ବରଷାରେ ଘନ, ଦେଖିଲେ ଜୀବନ, ରଖିବା କଷ୍ଟ

ହେଲଣି । ମୁହିଁ ନାଗ୍ବରର, ହେବକଇଁ କାହାର, ବୁଦ୍ଧ ବଣା ଝଟିଲଣି । ୨ । ଦୁରନ୍ତ ଶୀତରେ, ଏ ଫୁଲଶେଯରେ, ଶୋଇବ ମୁଁ ଏକା ପୁଣି । ଅତି ସ୍ନେହବଶ, ହୋଇଣ କେ ତୋଷ, ଘୋଡ଼ାଇବ ତୁଳି ଆଣି । ବସନ୍ତରେ ହାର ଗୁନ୍ଥି, ମୁଁ କାହାର ଗଳେ ଲମ୍ବାଇବ ଜାଣି । ସବୁ ସୁଖମୟ, ସ୍ୱପନ ପରାୟ, ହେବ ନିତ୍ୟାନନ୍ଦ ଭଣି । ୪ ।

(ପାଲା) ମଦନସୁନ୍ଦର କହେ କୁନ୍ତଳର ପାଶେ । ସ୍ତ୍ରୀ ଲଯ୍ୟା ବିବେକୀ ଜନ ନା ଯାଏ ବିଦେଶେ । ତ୍ରେତୟାରେ ରାମଚନ୍ଦ୍ର ପୂର୍ଣ୍ଣ ବ୍ରହ୍ମ ଥିଲ । ଜନକନନ୍ଦିନୀ ଲଯ୍ୟା ବନବାସେ ଗେଲ । ପଞ୍ଚବଟୀ ବନେ ରାମ ହିଲ ଦରଶନ । ସୀତା ଚୋରାଇଯ୍ୟା ନିଲ ଲଙ୍କାର ରାବନ । ରାମଚନ୍ଦ୍ର ବୀରଶ୍ରେଷ୍ଠ ଧନୁର୍ଦ୍ଧର ଥିଲ । ଦଶକନ୍ଧ ବଧକରି ସୀତା ଘରେ ନିଲ । ଆମି ସୁର ବୀର ନହି କିବା ଧନୁର୍ଦ୍ଧର । କାହାକେ କି କରିପାରି ସାଧବ ମାତର । ବାଟେ ଚୋରେ କେହୁ ଯଦି ଗୁଡ଼ାଇଯ୍ୟା ନବେ । ତବ ଗୁନ ଗୁନ ସଖୀ ପରାନ ଯାଇବେ । ଥାକ ଗୋ କୁନ୍ତଳ ଆମି ଯାର ବିଦେଶରେ । ଦୁଇଭାଇ ତଳସିବ ରଙ୍ଗିମା ଘାଟରେ । କନ୍ୟା ବଲେ ନିଶ୍ଚେ ଯଦି କରିବେ ଗମନ । ତୋମାର ନିକଟେ ଆଛେ ମୋର ନିବେଦନ । ତୁମି ପ୍ରାନନାଥ ଯଦି ଚଲିଲେ ବିଦେଶ । ଆମାର ଗର୍ଭ ସଞ୍ଚାର ହୈଲ ପାଞ୍ଚମାସ । ଆର ପାଞ୍ଚମାସ ତୁମି ଥାକ ନିଜ ଘରେ । ପୁତ୍ର ବେଟି କିବା ହବେ ଦେଖିଯାବେ ତାରେ । ମଦନସୁନ୍ଦର ବଲେ ଶୁନ ଗୋ ବଚନ । ତୋର ଗର୍ଭ କଥା ଜାନେ ସତ୍ୟ-ନାରାୟନ । ଏହି କଥା ନୁନ୍ତଲ ଯେ ନିଶ୍ଚିତ ରାଖିବେ । ଗର୍ଭବ୍ୟଥା କାଳେ ସତ୍ୟପୀର ସୁମରିବେ । ପୁତ୍ର କିବା ବେଟୀ ହେଲେ ଦିବେ ଏହି ନାମ । କହିତେଛି ସେହିକଥା ମନ ଦିଆ ଶୁନ । କନ୍ୟା ହେଲେ ସୁଶୀଳସୁନ୍ଦରୀ ନାମ ତାର । ଦିବେ ଗୋ କୁନ୍ତଳଧନି ନ ଭାବ ଅନ୍ତର । ଦେବ ଯୋଗେ ହବେ ଯଦି ଛୁବାଲ କୁମର । ତାର

ନାମ ହବେ ସଦାନନ୍ଦ ସୌଦାଗର । ସର ଖଣ୍ଡ ଅଧାମ ଶୋଟିକା ଖୁଆଇବେ । ଓଡ଼ିଆ ବଙ୍ଗଳା ଆର ଫାରଶି ପଢ଼ାବେ । ସୁପୁଣ୍ଡ ହଇଲେ ସେହୁ ଡଲସିବେ ମୋରେ । କୁପୁତ୍ର ହଇଲେ ବସି ଥାକବେ ମନ୍ଦରେ । କୁନ୍ତଲା ବଲଲ ଇହା ବଡ଼ ବଡ଼ମ୍ବନ । ଗର୍ଭପୁତ୍ର ବାପ ବଲ ଚହ୍ନିବେ କେମନ । ଏତ ଶୁନ ମଦନ ଯେ ଖୋଷାଲ ଅନ୍ତରେ । କଲମ ଧରିଯା ଲେଖ କାଗଜ ଉପରେ । ଭାଗିରଥୀ ଖରେ ବସେ କାଞ୍ଚନ ନଗର । ସେହି ଦେଶ ନୃପତି ଯେ ନାମ ରତ୍ନାକର । ସାନନ୍ଦ ବିନୋଦ ନାମ ଦୁଇ ସହୋଦର । ତାର ଜ୍ୟେଷ୍ଠ-ଭାଇ ଆମି ମଦନସୁନ୍ଦର । ଦୁଇବଧୂ ସୁମନ୍ତି କୁମନ୍ତି କନ୍ୟା ଛିଲ । ଫିକର କରିଯା ମୋରେ ସନ୍ଧାନ କରିଲ । ହେନ କଥା ଦୁଇଭାଇ ପାଇଲ ଖବର । ସୁମନ୍ତି କୁମନ୍ତି ଫିଙ୍ଗେ ଦରିଆ ଭିତର । ତାରପରେ ଦୁଇଭାଇ ଚଲଲ ବେପାରେ । ବନ୍ଧନେ ପଡ଼ିଲ ଗିଯା ରଙ୍ଗମା ଘାଟରେ । ଛମାସେ ମଦନ ଆମି ଦେଖିଲୁ ସ୍ୱପନ । ରଙ୍ଗମାତେ ବନ୍ଧକୈଲ କନ୍ୟା ଦୁଇଜନ । ସୁପୁତ୍ର ହଇଲେ ତୁମି ମୋରେ ଡଲସିବେ । କୁପୁତ୍ର ହଇଲେ ଗ୍ରିହେ ବସିଆ ଥାକବେ । ନଅ ଗୋ କୁନ୍ତଲା ଏହି ଦସ୍ତଖତ ମୋର । କାପଡ଼ ଜଡ଼ାଇ ରଖ ପେଟାର ଭିତର । ବାଳକ ଯଦ୍ୟପି ମୋର ତଲସିତେ ଯାବେ । ଦସ୍ତା ଵଜ କାଗଜ ତାହାର ହାତ ହବେ । ହାତେର ଅକ୍ଷର ଦେଖି ଜାନବ ତାହାରେ । ଶୁନଆଁ କୁନ୍ତଲା ତବେ ରହିଲ ମନ୍ଦରେ । ମଦନସୁନ୍ଦର ବଡ଼ ଉଦବେଗ ମନ । ପହିଲ ଜାହାଜେ ଉଷା କାଲେତେ ଗମନ । ଦଧି ମାଛ ପୂର୍ଣ୍ଣକୁମ୍ଭ ରଖିଆ ମନ୍ଦରେ । କର୍ଣ୍ଣଧାର ସଙ୍ଗେ ଲଯା ଚଲଲ ସତ୍ୱରେ । ସାତ-ଗୋଟି ଜାହାଜେତେ ଟାକା ଦିଲ ଭରି । ଜାହାଜେ ବସିଯା ସାଧୁ ବଲେ ହରି ହରି । ସୁବର୍ଣ୍ଣ କେରଲ ନଯା ଆପନାରେ କରେ । ଲୁଦଆ ବସିଲ ସାଧୁ ଜାହାଜ ମଙ୍ଗରେ । ହରିଧ୍ୱନ କରିଯା ଖେଞ୍ଚିଲ

ନନ୍ଦଙ୍କର । ଆସମାନେ ଦେଖି ହାସେ ପ୍ରଭୁ ସତ୍ୟପୀର । ପୁନଃ ଖାଟରେ ଦପ୍ଟାଇଲେ ପ୍ରଭୁ ନାରାୟନ । ଘଡ଼ିକେ ପିଟିଲ ଡଙ୍ଗା ଚୌଷଠି ଯୋଜନ । ଅଙ୍ଗ ବଙ୍ଗ ଜନ ଗେଲ କଳଙ୍ଗ ସହର । ବରାଠ ଜନପୁ। ଗେଲ ମଗଧ ଦେଶର । ମଦନେର ମନ ପ୍ରଭୁ ଜାନ-ବାର ତରେ । ପ୍ରବେଶିଲ ଡଙ୍ଗାଗିପୁ। ଚିଙ୍ଗୁଡ଼ି ହ୍ରଦରେ । ବଡ଼ ବଡ଼ ଚିଙ୍ଗୁଡ଼ି ପ୍ରବଲ ମହାବଲି । ଏକଇ ଚିଙ୍ଗୁଡ଼ିପାଟରେ ସାତଡଙ୍ଗା ଗିଲି । ମଦନ ବଲିଲ ଆହେ କର୍ଣ୍ଣଧାର ଭାଇ । ବିଷମ ଚିଙ୍ଗୁଡ଼ିହ୍ରଦ କେମ-ନେତେ ଯାଇ । କର୍ଣ୍ଣଧାର ବଲେ ସାଧୁ ଶୁନ ହେ ଉତ୍ତର । ଏ ହ୍ରଦ ଜନତେ ଆଛେ ଫିକର ଆମାର । ଏତେ କହି କର୍ଣ୍ଣଧାର ଶୀଘ୍ର ହୟାଁଗେଲ । ଏକଟା ମଚ୍ଛାନ ସେ ଯେ ଜଲେ ଭସାଇଲ । ତାକେ ଦେଖି ଚିଙ୍ଗୁଡ଼ି ଯେ ଡୁବିଲ ଜଲତେ । ଡଙ୍ଗା ଲୟା ଚଲେ ସାଧୁ ମନ ହରଷେତେ । ପୁନର୍ବାର ମଦନ ଚଲିଲ କତଦୂର । ପ୍ରବେଶ ହଇଲ ଡଙ୍ଗା କଙ୍କଡ଼ା ହ୍ରଦର । ପ୍ରବଲ କଙ୍କଡ଼ା ଓଗାଲିଲ ଜାହାଜେର । ଗୁରନ୍ଦୋଶ ଦାର୍ଘ ପ୍ରସ୍ଥ ଶରୀର ବିସ୍ତାର । ମଦନ ବଲିଲ ଆହେ କର୍ଣ୍ଣଧାର ଭାଇ । ବିଷମ କଙ୍କଡ଼ା ହ୍ରଦୁ କେମନେତେ ଯାଇ । କର୍ଣ୍ଣଧାର ବଲେ ତୁମି ଶୁନହେ ମଦନ । ଏ ହ୍ରଦ ଜନତେ ଜାନ ଉତ୍ତମ ବିଧାନ । ଏତ କହିଁ କର୍ଣ୍ଣଧାର ଶୀଘ୍ର ହୟା ଗେଲ । ଲୁହାର କଙ୍କଡା ଆନ ଜଲେ ଫେଲାଇଲ । ତାକେ ଦେଖି କଙ୍କଡ଼ା ଯେ ଡୁବିଲ ଜଲତେ । ଡଙ୍ଗା ଲୟା ଚଲେ ସାଧୁ ମନ ହରଷେତେ । କତଦୂର ମଦନ ଯେ କରିଲ ଗମନ । ଆସମାନେ ଦେଖି ହାସେ ପ୍ରଭୁ ନାରାୟନ । ଏହିରୂପେ ନାରାପଦେ କତଦୂର ଗେଲ । ଶଙ୍ଖୁଆ ହ୍ରଦେତେ ଡଙ୍ଗା ପ୍ରବେଶ ହଇଲ । ହ୍ରଦ ଦେଖିଆ ମଦନ ବଲେ କର୍ଣ୍ଣଧାର । ଏ ହ୍ରଦର ନାମ ବଲ ଅଗ୍ରତେ ଆମାର । କର୍ଣ୍ଣଧାର ବଲେ ସାଧୁ କହିହେ ତୁମାରେ । ଶଙ୍ଖାସୁର ଦୈତ୍ୟ ଛିଲ ଏ ହ୍ରଦ ମଝିରେ । ବ୍ରହ୍ମା ବେଦ

ଫେରାଇଥିଲା ଏଥିକାନେ ରଖିଲ । ମୀନରୂପ ଧରି ପ୍ରଭୁ ଶଙ୍ଖ ବନାଇଲ । ପାଞ୍ଚଜନ୍ୟ ଯେତେ ଶଙ୍ଖ ନଲେନ କାଢ଼ିଥିଲା । ଆଉ ଯେତେ ସର୍ବ ଶଙ୍ଖ ରହିଲ ପଡ଼ିଥିଲା । ଏତ ଶୁନ ମଦନ ଯେ ହରଷ ହଇଲ । ଅନ୍ତର୍ଗତେ ପ୍ରଭୁପାଦେ ଧ୍ୟାନ ଲଗାଇଲ । ଡଙ୍ଗା ଲୟିା ମଦନ ଚଳିଲ କତଦୂରେ । ପ୍ରବେଶ ହଇଲ ଡଙ୍ଗା କୁମ୍ଭୀର ହ୍ରଦରେ । ଆକାଶେତେ ଥାକି ମାୟା କୈଲ ନାରାୟଣ । ବଡ଼ଇ କୁମ୍ଭୀର ଆଗେ ହଲ ଦରଶନ । କର୍ଣ୍ଣଧାର ବଲେ ଆହେ ବାଲକ ମଦନ । ଦାରୁନ କୁମ୍ଭୀର ମୁଖେ ମରିବା ଏଖନ । ମଦନ ବଲିଲ ଭୁମି ଶୁନ କର୍ଣ୍ଣଧାର । କୁମ୍ଭୀର ମୁଖୁ ରଖିବେ ପ୍ରଭୁ ସତ୍ୟଗୀର । ଯେହୁ ଗଜ ରକ୍ଷାକୈଲ ଗ୍ରାହେକ ମାରିୟା । ସେହୁ ପ୍ରଭୁ ଡଙ୍ଗା ମୋରେ ନବେ ଉଦ୍ଧାରିୟା । ମଦନେର ମନ ପ୍ରଭୁ ଜାନିୟା ଅନ୍ତରେ । ଅନ୍ତର କରିୟା ହଲ ସେ ମାୟା କୁମ୍ଭୀରେ । ଦେଖିୟା ମଦନ ଚଲେ ହରଷ ଅନ୍ତରେ । ଡଙ୍ଗା ଗିୟା ପ୍ରବେଶିଲ କଉଡ଼ି ହ୍ରଦରେ । ଲେଗେଛେ କଉଡ଼ି ଯୁଥ ପର୍ବତ ସମାନ । ଦେଖିୟା ମଦନ ତାରେ ହରଷିତ ମନ । ଏହୁ ପ୍ରଥମେ ମଦନ ଆସେ ଦରିଆତେ । ଯୂଥ ବଳ ନା ପାରିଲ ପରେର ଚଲିତେ । କର୍ଣ୍ଣଧାରେ ସାଧୁ ବଲେ ଶୁନ ମୋ ବଚନ । ଦ୍ରବ୍ୟ ଫୁଟି ମାଛ ଧାନ କରିବ ରନ୍ଧନ । ଗାଲିଦିୟା ମଦନରେ କହେ କର୍ଣ୍ଣଧାର । ପୂର୍ବେ ଶୁଷା ଛିଲେ ଏବେ ହଲେ ସୌଦାଗର । ସାଧୁତେର ପୁତ୍ର ଯନ୍ଧ ଭୁମି ଥାକ ହୟା । କଉଡ଼ିକେ ମାଛ ବଲ କେମନ କରିୟା । ମଦନ ବଲିଲ ଆହେ କର୍ଣ୍ଣଧାର ଭାଇ । କ ଦେଖିବ ସିନ୍ଧୁ ଜନ୍ତୁ ସିନ୍ଧୁ ଦେଖି ନାହିଁ । ଆଜିର ବେପାରେ ଆମି ପହିଲେ ଆଇନୁ । ସେହୁ ହେତୁ କଡ଼ି ଯାଥ ଚଲିତେ ପାରିନୁ । ଶୁନ କର୍ଣ୍ଣଧାର ଯେ ଖେଞ୍ଚିଲ ନହଙ୍ଗର । ଡଙ୍ଗା ଗୁଲାଇୟା ହଲ ଦରିଆ ଭିତର । କତଦୂର ଏହୁ ମଭ ଗେଲ ତରଙ୍ଗରେ । ପ୍ରବେଶିଲ ଡଙ୍ଗାଗିୟା

ହାଓ୍ୱାୟୁ ହ୍ରଦରେ । କର୍ଣ୍ଣଧାର ବଲେ ଆହେ ମଦନସୁନ୍ଦର ।
ଜାନିଲିମ ଛବ ଭାଗ୍ୟ ଫାଟିଲା ଏବାର । ଯେଇ ସୌଦାଗର କମ୍ଭ
ଆସି ବାମ୍ ହଏ । ହାଓ୍ୱାୟୁ ହ୍ରଦରେ ତାର ଡିଙ୍ଗା ପ୍ରବେଶଏ ।
ଡୁବଏ ଜାହାଜ ତାର ମରେ ମହାଜନ ।- ଏତ ଜାନ ବୁଧାତା
ଯେ କୈଲ ବଡ଼ମ୍ବନ । ହାଓ୍ୱାୟୁ ହ୍ରଦର କଥା ଶୁନ ଯଦୁମନ ।
ଚଉରାଶୀ କାଠି ଗର୍ଭେ ରହିଆଛେ ପାନି । ତାତେ ଦଲ ଲତା ସବ
ରହି ଆଛେ ମାଡ଼ି । ହାଓ୍ୱା ଘୋଡ଼ା ପଲ ପଲ ଯାଏ ତାତେ ଚଢ଼ି ।
ଯା ଉପରେ ଯାଏ ହାଓ୍ୱା ଘୋଡ଼ା ଲସକର । ଜାହାଜ ଟିପିବ
ଆମି କେମନ ପ୍ରକାର । ସାଧୁ ବଲେ କର୍ଣ୍ଣଧାର କହି ହେ ତୁମାରେ ।
ଉଦ୍ଧାରିତେ ପ୍ରଭୁ ମୋର ଆଛେନ ଉପରେ । ଦ୍ରୌପଦୀର ମାନ
ଯେହୁ ଆଛେ ଉଦ୍ଧରିୟା । ଉଦ୍ଧାର କରିବେ ମୋରେ ସେ ପ୍ରଭୁ
ଆସିୟା । ଏତ କହି ମଦନ ଯେ ନୀରବ ହଇଲ । ଅନ୍ତର୍ଗତେ ପ୍ରଭୁ
ପାଦେ ଧ୍ୟାନ ଲଗାଇଲ । ମଦନେର ମନକଥା ଜାନି ନାରାୟନ ।
ଧ୍ରୁବେ ବର ହଲ ଯେନ କମଲଲୋଚନ । ବୈକୁଣ୍ଠ କଟାରି ପ୍ରଭୁ
ଆନି ନିଜକରେ । ବଡ଼ାଇୟା ହଲ ପୀର ମଦନସୁନ୍ଦରେ ।
କଟାରି ପାଇ ମଦନ ହରଷ ଅନ୍ତରେ । ବାନ୍ଧିଲ କଟାରି ଲୟେଁ
ଜାହାଜ ମଙ୍ଗରେ । ପିଛେର ଲଙ୍ଗର ଯେବେ ହଲ ଉଠାଇୟା ।
କାଟାରିର ଚୋଟେ ଦଲ ଗେଲ ଯେ କାଟିୟା । ହାଓ୍ୱାୟୁ ହ୍ରଦେତେ
ଡିଙ୍ଗା ଟିପିଲ ମଦନ । ରଙ୍ଗ ମା ଘାଟେତେ ଗିୟା ପ୍ରବେଶ ତଖନ ।
ଏତ ଏତ ବିପଦ ଯେ ହରିଆଛେ ହଲ । ଛମାସେର ପଥ ସାଧୁ
ପାଞ୍ଚଦିନେ ଗେଲ । ଦୁଇଭାଇ ଯେଇଖାନେ ପଡ଼େଛେ ବନ୍ଧନ ।
ସେହି ଘାଟେ ପ୍ରବେଶିଲ ବାଲକ ନନ୍ଦନ । ଦାଉଁ ଦାଉଁ ଦମାଲ
ପଡ଼ିଲ ଘୀର ଡାକ । ଏକବାରେ କମାନ ଖଲାସ ଗୋଟା ସାତ ।
ଯଖନ ମଦନର କମାନ ଖଲସିଲ । ସୁମନ୍ତ କୁମନ୍ତ ଶୁନି ଚମକି
ଉଠିଲ । କୋଟାଲେ ଡାକଆ କନ୍ୟା କହିଲ ତଖନ । ନଦୀଘାଟେ

ଆଉ ଦେଖ କୋନ ମହାଜନ । କନ୍ୟାର ବଚନେ କୋଟାଲିଆ ଚଲେ ଗେଲ । ମଦନେର ଆଗେ ଗିୟା ମୁଲକାତ ହଲ । କୋଟାଲିଆ ବଲେ ତୁମି ଶୁନ ସୌଦାଗର । ଦାରୋଗା ହୁକୁମ ଆଛେ ଚଲ ଶୀଘ୍ରତର । କୋଟାଲେ ମଦନ ବଲେ ଶୁନ ଓରେ ଭାଇ । ଲୁଚ ପୁଚ ନଇ ବଡ଼ ସୌଦାଗର ଭାଇ । ଆଗେ ମହାରାଜା କାଛେ ମୁଲକାତ ହବ । ତଦପରେ ଦାରୋଗା ହାସିଲ ବୁଝାଇବ । କୋଟାଲ ବଲିଲ ଓହୋ ସୌଦାଗର ଭାଇ । ଏ ଘାଟେତେ ନାହିଁ ଫିରେ ରାଜା ଦୁହାଇ । ସେଇ ରାଜାର ସେ ଦାରୋଗା ଘାଟେର ଉପର । ଦଣ୍ଡଛତ୍ର ପାଟ ଆଛେ ଦାରୋଗାର ଶିର । ମଦନସୁନ୍ଦର ବଲେ ଶୁନ କୋଟାଲିଆ । ତବକଥା ଆଚମ୍ବିତ ଲାଗିଲ ଶୁନିୟା । ଜବର୍ଦସ୍ତ ଦାରୋଗା ଏହି ମୁଲକରେ । ଚଲ ଆମି ଭେଟି ହବ ସେହି ଦାରୋଗାରେ । ଏତବଲି ମଦନ ସେ ବାହାର ହଇଲ । ଲବଙ୍ଗ ଜାଇଫଳ ଆଦି ଭେଟିଦ୍ରବ୍ୟ ନିଲ । ଆଗେ ଚଲେ କୋଟାଲିଆ ପଶ୍ଚାତେ ମଦନ । ଦାରୋଗା ଭେଟିତେ ଉଦ୍‌ବିଗ୍ନ କରି ମନ । ସୁମନ୍ତ କୁମନ୍ତ ସେ ମହଲେ ବସିଛିଲ । କଟୁଆଲ ପିଛେ ତାର ନଜର ପଡ଼ିଲ । ସୁମନ୍ତ ବଲେ ଗୋ ଦିଦି ଶୁନ ନିବେଦନ । କଟୁଆଲ ପିଛେ ଆସେ କୋନ ମହାଜନ । କୁମନ୍ତ ବଲିଲ ଦୁଷ୍ଟ ଅକୃତଜ୍ଞ ହୀନ । କୋଟାଲେର ପିଛେ ସେହୁ ଗୋଲାମ ମଦନ । ଆମାଦେର ନାମେ ଏହୁ ଚୁଗୁଲି କହିଲ । ସେଠାରି ଭରି ଭୂପାତେ ଉପଦେଶ ହଲ । ଦୁଇଭାଇ ବନ୍ଧନେ ରହିଲି କାରାଗାରେ । ଆସିଆଛେ ଗୋଲାମ ମଦନ ଦୁଃଖବାରେ । କୋଟାଲେ ହୁକୁମ ଦିଦ କର ଗୋ ଏଖନ । ନଗରେର ବାହାରେ ତାର କଟାଅ ଗର୍ଦନ । ସୁମନ୍ତ ବଲେ କୁମନ୍ତ ବାତ କହି ତୋରେ । ଲୁଚ୍ଚଇ ମାରିବା କେନ ଏହି ଗୋଲାମରେ । ଦୁଇଭାଇ ମାଝେ ଲୟା ବେଡ଼ି ଦିଆଇବେ । ମଦନେର ଦଶା ଦେଖି ଦୁଭାଇ ମରିବେ । ଦୁଇଭାଇ

ମଲେ ପରେ ମରିବେ ମଦନ । ପୁରୁଷେର ହତ୍ୟାଦୋଷ ନ ହେବ କଖନ । ଏହି କାଳେ ମଦନ ଯେ ମିଳିଲ ହଜୁରେ । ଭେଟିଦ୍ରବ୍ୟ ରଖି ବଲେ ଜନାବରେ ଜନାବରେ । ସୁମନ୍ତ ବଲେ କୋଟାଲ ଶୁନ ମୋ ବଚନ । କାରାଗାରେ ରଖ ସାଧୁ କରିଯା ବନ୍ଧନ । ପୂର୍ବେ ଯେଇ ଦୁଇଭାଇ ଆଛେ ବନ୍ଦଘରେ । ତାରମାଝେ ବେଡ଼ି ହବେ ଏହି ସୌଦାଗରେ । ଏତ ଶୁନି କଟୁଆଲ ଚମକି ଉଠିଲ । ମୁଶୁକ ଚଡ଼ାଇ ବେଗେ ମଦନେ ବାନ୍ଧିଲ । ସାତଗୋଟା ଜାହାଜେତେ ଯତ ମାଲ ତାର । ଦାଖଲ କରିଲ ଆନି ଦାରୋଗା ମନ୍ଦିର । ମଦନେର ପାଦେ ଦିଲ ଭୁଜବଳ ବେଡ଼ି । ଗଲାତେ ଛଡ଼ିକା ଦିଲ ହାତେ ହାତ-କଡ଼ି । ଦୁଇଭାଇ ମଧ୍ୟଖାନେ ମଦନ ଫେଲିଲ । ବାଇଶ ମହଁନ ଶିଲ ଗୁଣ୍ଡିତେ ନହିଲ । ସାନନ୍ଦ ବିନୋଦ ଦାଇ ମଦନେ ଚହ୍ନିଲ । ମଦନସୁନ୍ଦର ଦୁଇଭାଇରେ ଜାନିଲ । ତିନଭାଇ ବନ୍ଦଘରେ ବଡ଼ କ୍ରୋଧ କରେ । ଲକ୍ଷେକ ନୃପତି ଯେନ ଜରାସନ୍ଧ ପୁରେ । ଗାଏ ଦ୍ୱିଜ କବିକର୍ଣ୍ଣ ନାରାୟଣ ପାଯେ । ଭକ୍ତେର ବାନ୍ଧବ ପ୍ରଭୁ ହବେ ବରଦାଏ ।

---

## ମଦନସୁନ୍ଦରର ଈଶ୍ୱରଙ୍କୁ ପ୍ରାର୍ଥନା

ରାଗ—ଶ୍ରୀ, ତାଳ—ଆଠତାଳୀ ।

ବିନାଦୋଷେ ଏ ପାଶବନ୍ଧନ ହେ ଦୟା ଘେନ । ପଦ ।

କେଉଁ ଅପରାଧୀ ହେଲୁଁ କାରାଗାର ଭୋଗ କଲୁ
ନଷ୍ଟେ ବିଦେଶରେ ମଲୁଁ ତୁମ୍ଭରେ ଶରଣ ଗଲୁ
ବାରେ ଘେନ, ଦାସ ନିବେଦନ । ୧ ।

ଦୟାନିଧି ନାମ ଧରି ନିର୍ଭୟ ଭାବ ତୁମ୍ଭରି
ଜନେ ବୋଲୁଥାନ୍ତି ହରି ଦୁଃଖରୁ ଦ୍ୟନ୍ତି ଉଦ୍ଧରି
କାହିଁ ଗଲା, ଏବେ ସେ ବଚନ । ୨ ।

ଆଉଁ ଜନଙ୍କ ଗୃହ୍ୱାର ଶୁଣିବାକୁ କର୍ଣ୍ଣ ଡେର
ବଡ଼ଙ୍କ ରୂପକୁ ଧରି ଅଭୟ ବାହୁ ବିସ୍ତାରି
ବସିଅଛ, ରତ୍ନ ସିଂହାସନ । ୩ ।
ଶୁଣ ନ ଶୁଣ ଆରତ ଆହେ ପ୍ରଭୁ ବିଶ୍ୱନାଥ
ନତ୍ୟାନନ୍ଦର ବାଞ୍ଛିତ ରହୁ ତବ ପାଦେ ଚିତ୍ତ
ଏହି ଭିକ୍ଷା, ଦିଅନ୍ତୁ ବଦନ । ୪ ।

ନିଷ୍ଟେର ପୀରଟେ ହରିବଲ ସର୍ବଜନ । କଳୁଷ ହରିବେ ବାବା ସତ୍ୟନାରାୟନ । କଳିଯୁଗେ ସତ୍ୟପୀର ସର୍ବଦେବ ସାର । ହରି ହରି ବଲ ଭାଇ ଦୁଃଖହବେ ଦୂର । ଶୁନଶୁନ ସାଧୁ ବୃନ୍ଦ ଦିଯ୍ୟା କର୍ଣ୍ଣମନ । ରହିବା ସ୍ଥାନକ୍ତ ପାଲା କରିବ ଗାୟନ । ସାନନ୍ଦ ବିନୋଦ ସଙ୍ଗେ ମଦନସୁନ୍ଦର । ଡିନଭାଇ ରହିଲ ଯେ ବନ୍ଧ କାରାଗାର । ଯେଇଦିନ ମଦନ ଯେ ଚଲିଲ ବିଦେଶ । ସେହିଦିନୁ କୁନ୍ତଲର ଗର୍ଭ ପାଞ୍ଚମାସ । ଦିନେ ଦିନେ ଗୁଜୁରିଏ ଛଅମାସ ଯାଏ । ସାତମାସ ଗର୍ଭ ହୈଲ ପୀରେର କୃପାଏ । ସାତମାସେ କନ୍ୟା ଗର୍ଭ ହୈଲ ହୁତାଶନ । ଟରମ ଗୁଡ଼ଆ ଲେଡେ ଶୀତିଲ ଚନ୍ଦନ । ଅଠମାସ ଗଭ ହୈଲ କୁନ୍ତଲ କାମିନୀ । ଗୌରାଙ୍ଗ ଟର୍ଭେତେ ରାଖେ ଶ୍ୱରୀ ଠାକୁରାଣୀ । ଏହିରୂପେ ନଏମାସ ଗୁଜରିଯ୍ୟା ଗେଲ । ଦଶମାସ ଡଶଦିନ ସମ୍ପୂର୍ଣ୍ଣ ହଇଲ । ମାର୍ଗଶିର କୃଷ୍ଣପକ୍ଷ ସପ୍ତମୀ ର ଦିନ । କୁନ୍ତଲ ଉଦରେ ଶୂଳ ଉଠେ ଘନ ଘନ । ଦାସ ବାନ୍ଦୀ ବେଡ଼ିଆଛେ ହଏ ସାରି ସାରି । ମଲ ମଲ ବାପମାଏ କାନ୍ଦାଏ ଝୁକାରି । ଦାସୀ ବାନ୍ଦୀକେ ତଖନ କହେ ସୁଧାଲୁମ୍ଣି । ଉଦର ଦିଆ-ଲେ ଆନ ଖାଇବ ଏଖାନ । କେ ସହିତେ ପାରେ ଦାସୀ ଗର୍ଭେର ବେଦନା । ଅଭାଗିନୀ ଗର୍ଭ ବ୍ୟଥା ବଡ଼ଇ ଯନ୍ତ୍ରନା । ବଡ଼ଇ ବ୍ୟାକୁଲ କନ୍ୟା ହଇଲ ଯଖନ । ସତ୍ୟପୀର ଦସ୍ତଗୀର ପଡ଼ିଲ ସରନ । କୋଥା ଆଛ ମହାପ୍ରଭୁ ସତ୍ୟନାରାୟନ । ଏ ଗର୍ଭ ସଙ୍କଟେଁ

